# ସ୍ୱରଶିଖା

## ରଜତ ଜୟନ୍ତୀ




ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱ ବିଦ୍ୟାଳୟ

# ସ୍ମରଣିକା

## ରଜତ ଜୟନ୍ତୀ

୧୯୭୮ - ୯୩

ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ




## ସମ୍ବଲପୁର ବିଶ୍ୱବିଦ୍ୟାଳୟ

ମୁଖ୍ୟ ସଂପାଦକ

ଡକ୍ଟର ଆଦିକନ୍ଦ ସାହୁ

ବିଭାଗୀୟ ମୁଖ୍ୟ

ସଂପାଦନା ମଣ୍ଡଳୀ :

ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
ଶରତ ଚନ୍ଦ୍ର ପ୍ରଧାନ
ବୈରାଗୀ ଚରଣ ଜେନା
ସଚ୍ଚିଦାନନ୍ଦ ମିଶ୍ର
କୁମୁଦ ରଞ୍ଜନ ପାଣିଗ୍ରାହୀ
ସମର ମୁଦାଲି
ଅଶୋକ କୁମାର ଦାଶ
ପ୍ରଭାତୀ ରଥ

ପ୍ରକାଶକ :

ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର

ମୁଦ୍ରଣ :

ଫାଇଭ ଷ୍ଟାର ପ୍ରିଣ୍ଟିଂ ପ୍ରେସ୍, ବୁର୍ଲା





ବି. ସତ୍ୟନାରାୟଣ ରେଡ୍ଡି
ରାଜ୍ୟପାଳ, ଓଡ଼ିଶା
ରାଜଭବନ
ଭୁବନେଶ୍ୱର-୭୫୧୦୦୮

# ବାର୍ତ୍ତା

ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟର ରଜତ ଜୟନ୍ତୀ ଉତ୍ସବ ଚଳିତ ମେମାସ ମଧ୍ୟରେ ପାଳିତ ହେବାକୁ ଯାଉଛି ଜାଣି ଖୁସି ହେଲି ।

ଦୀର୍ଘ ୨୫ ବର୍ଷ ଧରି ଏହି ବିଭାଗରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀ, ଗବେଷକ ଏବଂ ଗବେଷିକାମାନେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନିରବଚ୍ଛିନ୍ନ ଭାବେ କାର୍ଯ୍ୟକରି ଏହାର ଆଲୋଚନା, ପର୍ଯ୍ୟାଲୋଚନା ଏବଂ ସମାଲୋଚନା କରିପାରିଛନ୍ତି । ଓଡ଼ିଆ ସାହିତ୍ୟକୁ ସମୃଦ୍ଧ ଓ ବୃଦ୍ଧିମନ୍ତ କରିବାରେ ଏବଂ ଦିଗ୍‌ଦର୍ଶନ ଦେବାରେ ଏହି ବିଭାଗର ଅବଦାନ ଭୁଲିବାର ନୁହେଁ ।

ମୁଁ ଉପାଧ୍ୟୁତ୍ତର ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉତ୍ସବର ସଫଳତା କାମନା କରୁଅଛି ।

ବି. ସତ୍ୟନାରାୟଣ ରେଡ୍ଡି
ରାଜ୍ୟପାଳ, ଓଡ଼ିଶା

*SRIBALLAV PANIGRAHI,* M P.
(Lok Sabha)



Res. : 8, Pt. Pant Marg,
New Delhi - 110001
Phone : 3755450, 3724334

9th April, 1994

# M E S S A G E

It gives me great pleasure to learn that the P. G. Department, Sambalpur University, is going to publish a bilingual souvenir on the occasion of its Silver Jubilee Celebrations during April, 1994. University being a forum of higher education and research, I hope, the P. G. Department will hence forward pay adequate attention towards research and development of the local language i. e. Sambalpuri-Koshali and thus further contribute to the enrichment of the Oriya language and literature.

While congratulating the organisers of the Silver Jubilee Celebrations and the students and the members of staff of the P. G. Department, I send my good wishes for the success of the souvenir as well as the Silver Jubilee Celebrations.

( SRIBALLAV PANIGRAHI )

ଅରୁଣ କୁମାର ସାମନ୍ତରାୟ
ଆଇ.ଏ.ଏସ୍.
କୁଳପତି,
ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ଶୁଭେଚ୍ଛା ବାର୍ତ୍ତା

ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସ୍ନାତକୋତ୍ତର ଓଡ଼ିଆ ବିଭାଗ ତା'ର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ **ରଜତ ଜୟନ୍ତୀ** ପାଳନ କରିବା ଅବସରରେ ଏକ ସ୍ମରଣିକା ପ୍ରକାଶ କରୁଛି । ଏହା ଅତ୍ୟନ୍ତ ଆନନ୍ଦର ବିଷୟ ।

ପୂଜ୍ୟପୂଜାର ଶ୍ରଦ୍ଧାନ୍ୱିତ ପରଂପରା ସୃଷ୍ଟି କରିବାର ପ୍ରବଣତା ପ୍ରକୃତରେ ସତ୍ ସୃଜନଶୀଳତା । ମଣିଷର ମାନବକଲ୍ୟାଣ ଭାବନା ସହିତ ଏହି ସୃଜନଶୀଳ ସମନ୍ୱିତ ହେଉ ଓ ତାହା ବିଶ୍ୱକଲ୍ୟାଣରେ ସହାୟତା କରୁ । ସାହିତ୍ୟ ମାନବାତ୍ମାର ମୁକ୍ତି ବିଧାନ କରେ । ଯେକୌଣସି କାଳର ସତ ସାହିତ୍ୟ ହେଉଛି ମହାମୁକ୍ତିର ପ୍ରସ୍ରବଣ । ସେହି ମହାମୁକ୍ତିର ପରିବୋଧନୀୟ ଉପଲବ୍ଧି ପ୍ରତି ଜଣେ ଉନ୍ମୁଖତା ପ୍ରଦର୍ଶନ କରି ପାରିଲେ ଜୀବନରେ ବୌଦ୍ଧିକ ସୁଦ୍ଧା ମୁକ୍ତିର ମାର୍ଗ ସ୍ୱତଃ ଉନ୍ମୋଚିତ ହୋଇଯିବ ।

ଗୋଟିଏ ବିଭାଗର ଅଭିଜାତ ପ୍ରକାଶନ ହିଁ ତାକୁ ଉତ୍ତରକାଳରେ ଚିହ୍ନିତ କରାଇଥାଏ । ଛାତ୍ରଛାତ୍ରୀମାନେ ଅଧ୍ୟୟନ ସହିତ ରଚନାତ୍ମକ କାର୍ଯ୍ୟରେ ନିଜକୁ ନିବିଡ଼ ଭାବରେ ନିୟୋଜିତ କରି ନିଜର ଚିନ୍ତା ଚେତନାକୁ ବ୍ୟକ୍ତ କରିବାର ସୁଯୋଗ ସୃଷ୍ଟି କରନ୍ତୁ ଆଜି ଏହି ଅବସରରେ ମୁଁ ଏହା କାମନା କରୁଛି ।

ଜ୍ୟୋତିବିହାର
ଅକ୍ଷୟ ତୃତୀୟା, ୧୯୯୪

ଅରୁଣ କୁମାର ସାମନ୍ତରାୟ



ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ
(ଅବସର ପ୍ରାପ୍ତ ଅଧ୍ୟକ୍ଷ, ଗଙ୍ଗାଧର ମେହେର
ମହାବିଦ୍ୟାଳୟ, ସଂବଲପୁର ତଥା ଅବସରପ୍ରାପ୍ତ
ଓଡ଼ିଆ ଓ ସଂସ୍କୃତ ପ୍ରଫେସର ରେଭେନ୍‌ସା କଲେଜ
ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ)
ପ୍ରଫେସରପଡ଼ା, କଟକ-୩

# ଶୁଭେଚ୍ଛା

ପ୍ରିୟ ଡକ୍ଟର ଆଦିକନ୍ଦ ବାବୁ,

ଆପଣଙ୍କର ଚଳିତ ମାସ ତା ୮ ରିଖର ପତ୍ରରୁ ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ରଜତ ଜୟନ୍ତୀ ଉତ୍ସବ ପାଳିତ ହେଉଥିବା ଜାଣି ମୁଁ ଆନନ୍ଦିତ । ଏହି ଉତ୍ସବର ସାଫଲ୍ୟ ସକାଶେ ପରମେଶ୍ୱରଙ୍କୁ ପ୍ରାର୍ଥନା କରୁଅଛି ।

ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ
୨୨ । ୧୨ । ୯୩



ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ର
ଅବସର ପ୍ରାପ୍ତ ଓଡ଼ିଆ ଅଧ୍ୟାପକ ଓ
ନିର୍ଦ୍ଦେଶକ, ଓଡ଼ିଶା ସଂସ୍କୃତି ପରିଷଦ,
ଭୁବନେଶ୍ୱର

# ଶୁଭେଚ୍ଛା

ଶ୍ରଦ୍ଧେୟ ଡକ୍ଟର ସାହୁ,

ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ତାର ପ୍ରତିଷ୍ଠାର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ 'ରଜତ ଜୟନ୍ତୀ' ଉତ୍ସବ ସମାରୋହ ସହକାରେ ପାଳନ କରୁଥିବା ମୋ ପକ୍ଷରେ କେବଳ ଏକ ଶୁଭ ସଂବାଦ ନୁହେଁ, ଓଡ଼ିଶାର ସବୁ ପ୍ରାନ୍ତର ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରେମୀ ବିଦ୍ୱାନ ମାନଙ୍କ ନିକଟରେ ଗର୍ବ ଓ ଗୌରବର ବିଷୟ । ଏହି ଅବସରରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ସମୁଚିତ ପଦକ୍ଷେପ ଗ୍ରହଣ କରିବ ବୋଲି ମୋର ଦୃଢ଼ ବିଶ୍ୱାସ । ଓଡ଼ିଆ ଭାଷା ଓ ସାହିତ୍ୟ କେବଳ ଭାରତୀୟ ସ୍ତରରେ ନୁହେଁ, ବିଶ୍ୱଦରବାରରେ ନିଜର ମହିମା ଓ ଗରିମା ପ୍ରଦର୍ଶନ କରୁ ଏବଂ ଓଡ଼ିଆ ପ୍ରାଣରେ ଭାଷା ଓ ସାହିତ୍ୟ ପ୍ରତି ଅନୁରାଗ ସଂଚରିତ କରୁ ଏହି ଉତ୍ସବ ପାଳନ ସମୟରେ ଏହାହିଁ ମୋର ଆନ୍ତରିକ କାମନା ଓ ଶ୍ରୀ ଜଗନ୍ନାଥଙ୍କ କୃପାରୁ ଏ ଉତ୍ସବ ସିଦ୍ଧି ଓ ସଫଳତାର ଅଧିକାରୀ ହେଉ ବୋଲି ତାଙ୍କ ଶ୍ରୀଚରଣରେ ମୋର ନିବେଦନ ।

। ଇତି ।

କାହ୍ନୁଚରଣ ମିଶ୍ର
୧୮ । ୧୨ । ୯୩

ଡକ୍ଟର ନଟବର ସାମନ୍ତରାୟ
ବାଣୀଭବନ
ସାମନ୍ତରାପୁର, ଭୁବନେଶ୍ୱର-୭୫୧୦୦୨

# ଅଭିନନ୍ଦନ

ଡକ୍ଟର ସାହୁ,

ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ରୌପ୍ୟ ଜୟନ୍ତୀ ଉତ୍ସବ ଅବସରରେ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଆନ୍ତରିକ ଶୁଭେଚ୍ଛା ଜଣାଇବା ସଙ୍ଗେ ସଙ୍ଗେ ଏହି ଉତ୍ସବର ସଫଳ କାମନା କରୁଛି ।

ନଟବର ସାମନ୍ତରାୟ
୨୧ । ୧୨ । ୯୩



ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା
ଅବସରପ୍ରାପ୍ତ ପ୍ରାଧ୍ୟାପକ
ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ
ସଂବଲପୁର ବିଶ୍ୱବିଦ୍ୟାଳୟ

# ଅଭିନନ୍ଦନ

ଶ୍ରଦ୍ଧେୟ ଡକ୍ଟର ସାହୁ,

ଶଙ୍ଖଧ୍ୱନି ମଧ୍ୟରେ ଦିନେ ଏ ବିଭାଗର ଜନ୍ମୋତ୍ସବ ପାଳିତ ହେବା ଅବସରରେ ମୁଁ ରହିଥିଲି । ମୋ ଦେଖାନ୍ତରେ ଏ ମଧ୍ୟରେ ପଚିଶଟି ବସନ୍ତ ଯାଇଛି । ବିଭାଗୀୟ ଛାତ୍ର ଓ ଅଧ୍ୟାପକଙ୍କ କଳ୍ପନା, ଯୋଜନା ଓ କର୍ମଠତା ବଳରେ ବିକାଶର ସନ୍ଧାନ ପାଉଛି ସେ । ସମକ୍ଷରେ ଦୀର୍ଘ ଜୀବନ ପଥ; – 'କାଳୋଽହ୍ୟୟଂ ନିରବଧି ବିପୁଳା ଚ ପୃଥ୍ୱୀ' । ଚିର ପ୍ରସାରଶୀଳ ସାହିତ୍ୟ - ତରୁର ଚେରରେ ଚେରରେ ରହିଛି ପ୍ରାଣ ସଂଗ୍ରହର ଶକ୍ତି, ପର୍ଣ୍ଣର ସବୁଜିମା ଓ ପୁଷ୍ପକାନ୍ତର ଚମକରେ ରହିଛି ସାମାଜିକ ତଥା ସାଂସ୍କୃତିକ ବିକାଶର ବାର୍ତ୍ତା । ଏହି ବାର୍ତ୍ତା ଶୁଣି ଶୁଣାଇବ, ବୁଝି ବୁଝାଇବ ଯେଉଁ ବିଭାଗ, ତାହା ଲାଗି ନୂତନତାର ଇଙ୍ଗିତ ଅଶେଷ; ସାହିତ୍ୟ-କର୍ମୀପାଇଁ କର୍ମର ଅନ୍ତ ନାହିଁ ।

ସେହି କର୍ମର ସନ୍ଧାନ ଓ ସାଧନ ନିମିତ୍ତ ଏ ବିଭାଗର ସକଳ ଶକ୍ତିର ଉପଯୋଗ ହେଉ, ଏହାହିଁ ରଜତ ଜୟନ୍ତୀ ଅବସରରେ ମୋର କାମନା ।

ଅଭିନନ୍ଦନ ଜଣାଉଛି –

ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା
୧୯ । ୧୨ । ୯୩



**ଡକ୍ଟର ବେଣୀମାଧବ ପାଢ଼ୀ**
ଅବସର ପ୍ରାପ୍ତ ପ୍ରାଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# ଶୁଭେଚ୍ଛା

ଶ୍ରଦ୍ଧେୟ ଆଦିକନ୍ଦ ବାବୁ,

ସମ୍ବଲପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ୨୫ ବର୍ଷ ପୂର୍ତ୍ତି ଉପଲକ୍ଷେ ରଜତ ଜୟନ୍ତୀ ପାଳନ ଉତ୍ସବ କଥା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ବର୍ତ୍ତମାନ ଓଡ଼ିଆ ଭାଷା ଓ ସଂସ୍କୃତିର ଯେଉଁ କ୍ରମ ଅବକ୍ଷୟ ଘଟିବାରେ ଲାଗିଛି ସେତିକିବେଳେ ଆପଣଙ୍କ ଏ ପ୍ରଚେଷ୍ଟା ନିଶ୍ଚିତ ଭାବେ ଅଭିନନ୍ଦନୀୟ । ଆମ ଭାଷା, ଆମ ସଂସ୍କୃତି ଯେତେ ଐଶ୍ୱର୍ଯ୍ୟଶାଳୀ ହେଲେ ସୁଦ୍ଧା ଯଥାର୍ଥ ମର୍ଯ୍ୟାଦା ପାଇପାରୁ ନାହିଁ । ଏ ଅବସ୍ଥାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ପ୍ରମୁଖ ଭୂମିକା ଗ୍ରହଣ କରିବ ବୋଲି ମୋର ବିଶ୍ୱାସ । 'ବିଘ୍ନୈଃ ପୁନଃ ପୁନରପି ପ୍ରତିହନ୍ୟମାନାଃ ପ୍ରାରମୁତ୍ତମଜନା ନ ପରିତ୍ୟଜନ୍ତି' ବାକ୍ୟ ଅନୁଯାୟୀ ଆପଣମାନେ ବାଧା ବିଘ୍ନ ସତ୍ତ୍ୱେ ନିଶ୍ଚିତ ଲକ୍ଷ୍ୟ ସାଧନ କରିପାରିବେ ।

ଏହି ରଜତ ଜୟନ୍ତୀ ଅବସରରେ ଆପଣମାନଙ୍କ ଏ ସଦୁଦ୍ୟମ ପାଇଁ ମୁଁ ଶୁଭେଚ୍ଛା ଜଣାଇବା ସଙ୍ଗେ ସଙ୍ଗେ ଜଗନ୍ନାଥଙ୍କୁ ପ୍ରାର୍ଥନା କରେ ଯେ ଏ ସମାରୋହ ସର୍ବତୋଭାବେ ସଫଳତା ଲାଭ କରୁ ।

**ବେଣୀମାଧବ ପାଢ଼ୀ**
୨୦ । ୧୨ । ୯୩




**ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)**
ଏମ୍.ଏ., ପି.ଏଚ୍.ଡି.

ଅବସର ପ୍ରାପ୍ତ ପ୍ରଫେସର (ଓଡ଼ିଆ) ।।
ରେଭେନସା ମହାବିଦ୍ୟାଳୟ
କଟକ


# ଶୁଭେଚ୍ଛା ବାର୍ତ୍ତା

ଶ୍ରଦ୍ଧେୟ ଡକ୍ଟର ସାହୁ,

ସମ୍ବଲପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ଭଷା ଓ ସାହିତ୍ୟ ବିଭଗ ତାହାର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ରଜତ ଜୟନ୍ତୀ ଉତ୍ସବ ପାଳନ କରିବାକୁ ନିଷ୍ପତ୍ତି କରିଛନ୍ତି ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ମନେପଡୁଛି, ୧୯୭୦ ମସିହାରେ ସମ୍ବଲପୁର ବାଲିବନ୍ଧା (କମଲି ବଜାର) ନିକଟରେ ଥିବା ପାଟଣା ମହାରାଜାଙ୍କ ଏକ ପୁରାତନ ଦ୍ୱିତଳ ଭବନରେ ଏହାର ଶିକ୍ଷାଦାନ କାର୍ଯ୍ୟକ୍ରମ ପ୍ରଥମେ ଆରମ୍ଭ କରାଯାଇଥିଲା । ସେତେବେଳେ ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ୰ ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର ଓ ମୁଁ ଓଡ଼ିଆ ଉପାଧ୍ୟୁତ୍ତର କ୍ଲାସର ବିଭିନ୍ନ ବିଷୟ ପଢ଼ାଉଥିଲୁ । ଇତିମଧ୍ୟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତଥା ଉପାଧ୍ୟୁତ୍ତର ଓଡ଼ିଆ ବିଭଗର ବହୁ ଉନ୍ନତି ହୋଇଅଛି । ବିଶେଷତଃ, ଓଡ଼ିଶାର ପଶ୍ଚିମାଞ୍ଚଳର ଭଷା ଓ ଲୋକ ସଂସ୍କୃତିର ସଂଗ୍ରହ ଓ ଗବେଷଣା କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ସାଧିତ ହୋଇପାରିଛି । ଓଡ଼ିଆ ବିଭଗର ଛାତ୍ରଛାତ୍ରୀ, ଅଧ୍ୟାପକ ଓ ଗବେଷକଙ୍କ ନିଷ୍ଠା ଓ ସାଧନାରେ ଏହାର ଉତ୍ତରୋତ୍ତର ଉନ୍ନତି ହେଉ, ଏହାହିଁ ମୋର ଏକାନ୍ତ କାମନା ।

ଜାଣି ଆନନ୍ଦିତ ହେଲି, ଓଡ଼ିଆ ବିଭଗ ତାହାର ରଜତ ଜୟନ୍ତୀ ପାଳନ ଅବକାଶରେ ପ୍ରାକ୍ତନ ଅଧ୍ୟାପକ ମାନଙ୍କୁ ସମ୍ମାନିତ କରିବାକୁ ଓ ଏକ ସ୍ମରଣିକା ପ୍ରକାଶ କରିବାକୁ ମନସ୍ଥ କରିଅଛନ୍ତି । ମୁଁ ଏହାର ସଫଳତା କାମନା କରୁଅଛି ।

**ଜାନକୀ ବଲ୍ଲଭ ମହାନ୍ତି**
୧୮ । ୧୨ । ୯୩



ଡକ୍ଟର କୃଷ୍ଣ ଚରଣ ସାହୁ, ଏମ୍.ଏ.,ପି.ଏଚ୍.ଡି.
ଅବସର ପ୍ରାପ୍ତ ପ୍ରଫେସର ତଥା ବିଭାଗୀୟ ମୁଖ୍ୟ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର-୪

# ଅଭିନନ୍ଦନ

ଶ୍ରଦ୍ଧେୟ ଡକ୍ଟର ସାହୁ,

ସଂବଲପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆବିଭାଗ, ଏହାର ରଜତ ଜୟନ୍ତୀ ପାଳନ କରୁଥିବାରୁ ମୁଁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ଏହି ପଚିଶ ବର୍ଷ ମଧ୍ୟରେ ଓଡ଼ିଆ ବିଭାଗର ଛାତ୍ର, ଗବେଷକ ଓ ଅଧ୍ୟାପକ ମାନଙ୍କ ମିଳିତ ଉଦ୍ୟମରେ ସଂବଲପୁର ଅଞ୍ଚଳର ଲୋକସାହିତ୍ୟ ସଂଗ୍ରହ ତଥା ଅପ୍ରକାଶିତ ପୋଥି ଅନ୍ୱେଷଣର ଯେଉଁ ଅଭିନବ ଉଦ୍ୟମ ଆରମ୍ଭ ହୋଇଛି ତାହା ବିଶେଷଭାବେ ଉଲ୍ଲେଖ-ଯୋଗ୍ୟ ।

ସଂମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ନିଜର କର୍ମନିଷ୍ଠା ଓ ଅଧ୍ୟବସାୟ ବଳରେ ଓଡ଼ିଶାରେ ତାର ସ୍ୱତନ୍ତ୍ର ସ୍ଥାନ ଓ ସମ୍ମାନ ରଖୁ ଏହାହିଁ ମୋର କାମନା ।

ମୁଁ ରଜତ ଜୟନ୍ତୀର ସଫଳ କାମନା କରୁଛି ।

କୃଷ୍ଣ ଚରଣ ସାହୁ
୨୧ । ୧୨ । ୯୩



**ଡକ୍ଟର ଗଙ୍ଗାଧର ବଳ**, ଡ.ଲିଟ୍.
ଅବସରପ୍ରାପ୍ତ ପ୍ରଫେସର,
ଓଡ଼ିଶା ଶିକ୍ଷା ସେବା (୧)
ଜନିକା କଟେଜ୍, କଟକ-୧

# ବାର୍ତ୍ତା

ଶ୍ରଦ୍ଧେୟ ଆଦିକନ୍ଦ ବାବୁ,

ଆପଣଙ୍କ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉତ୍ସବ ପାଳିତ ହେଉଥିବାର ଜାଣି ଆନନ୍ଦିତ ହେଲି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗ ଆରମ୍ଭରୁ ଅଦ୍ୟାବଧି ଯେ ଉତ୍ତରଣ ପଥରେ ଅଗ୍ରସର ହୋଇଛି, ଏଥିରେ ସଂଦେହ ନାହିଁ । ବିଭାଗୀୟ ଅଧ୍ୟାପନାକୁ ବାଦ୍‌ଦେଲେ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ପାଇଁ ବିଭିନ୍ନ ସମୟରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ଆର୍ଥିକ ସହାୟତାରେ ରିଫ୍ରେସର କୋର୍ସ, ଆଲୋଚନା ଚକ୍ର ଓ ଗବେଷଣା ଯୋଜନାମାନ କାର୍ଯ୍ୟକାରୀ ହେଉଥିବାର ଜାଣି ମୁଁ ବିଶେଷ ଆନନ୍ଦିତ । ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟାପନା ସଂପର୍କିତ ରିଫ୍ରେସର କୋର୍ସ ଓ ଆଲୋଚନା ଚକ୍ରରେ (Seminar) ସାହିତ୍ୟଶାସ୍ତ୍ର (Poetics) ସଂପର୍କରେ ଆଲୋଚନା କରିବାର ସୁଯୋଗ ମୋର ହୋଇଛି । ଅତୀତର ଓ ବର୍ତ୍ତମାନର ପ୍ରଫେସର, ବିଭାଗୀୟ ମୁଖ୍ୟ ଓ ଅଧ୍ୟାପକ ବୃନ୍ଦଙ୍କର ଓଡ଼ିଆ ଓ ଓଡ଼ିଶା ବାହାରେ ବିଭାଗର ସମ୍ମାନ ବୃଦ୍ଧି ପାଇଁ ଯୋଜନାଭିତ୍ତିକ ଆନ୍ତରିକ କର୍ମ ପ୍ରଚେଷ୍ଟା ଆଗ୍ରହର ସହ ଲକ୍ଷ୍ୟ କରିଆସିଛି ।

ଆପଣଙ୍କ ବିଭାଗର ରଜତ ଜୟନ୍ତୀ ଉତ୍ସବର ସାଫଲ୍ୟ କାମନା କରି ରହୁଛି ।

**ଗଙ୍ଗାଧର ବଳ**
୩। ୩ । ୯୪



ଶ୍ରୀନିବାସ ମିଶ୍ର
ଅବସରପ୍ରାପ୍ତ ପ୍ରଫେସର
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# ଶୁଭେଚ୍ଛା

ଶ୍ରଦ୍ଧେୟ ଡକ୍ଟର ସାହୁ,

ପ୍ରାଦେଶିକ ଭାଷା ଓ ସାହିତ୍ୟର ଶିକ୍ଷାଦାନ ଓ ଗବେଷଣା ରତ ବିଭାଗ ଯେ କୌଣସି ବିଶ୍ୱବିଦ୍ୟାଳୟ ପକ୍ଷରେ ମର୍ଯ୍ୟାଦା ସୂଚକ । ଏକଦା ଓଡ଼ିଶାର ଏକ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗ ସୂଚୀରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ନାମୋଲ୍ଲେଖ ନଥିବାରୁ ଭାରତର ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ଜାକୀର ହୁସେନ କ୍ଷୋଭ ପ୍ରକାଶ କରିଥିଲେ । ଛାତ୍ରମାନଙ୍କ ମନରେ ମାତୃଭାଷା ପ୍ରୀତି ଓ ସାହିତ୍ୟ ଅନୁଶୀଳନ ସ୍ପୃହା ଓ ସଂସ୍କୃତି ସଚେତନତାର ବିକାଶ ନିମନ୍ତେ ଭାଷା ଓ ସାହିତ୍ୟର ଅଧ୍ୟୟନ ଓ ଚର୍ଚ୍ଚାର ଉପଯୋଗିତା ରହିଛି ।

ଭାରତ ଏକ ବହୁ ଭାଷାଭାଷୀ ଦେଶ । ଓଡ଼ିଶାରେ ପ୍ରାନ୍ତୀୟ ଓଡ଼ିଆ ଭାଷା ଛଡ଼ା ବହୁ ଆଦିବାସୀ ଭାଷା ପ୍ରଚଳିତ । ଏହାଛଡ଼ା ଆଞ୍ଚଳିକ ଭିତ୍ତିରେ ଓଡ଼ିଶାର ପଶ୍ଚିମ, ଦକ୍ଷିଣ ଓ ଉତ୍ତର ସୀମାରେ ଓଡ଼ିଆ ଭାଷାର ପ୍ରୟୋଗଗତ ସ୍ୱାତନ୍ତ୍ର୍ୟ ଓ ଭାଷାସମ୍ଭାର ମଧ୍ୟଅଛି । ଏ ଗୁଡ଼ିକର ବୈଶିଷ୍ଟ୍ୟ ଆହରଣ ଓ ସମୀକରଣ ମୂଳ ଓଡ଼ିଆ ଭାଷାର ପରିପୁଷ୍ଟ ବିଧାନରେ ସହାୟକ । ଏ କ୍ଷେତ୍ରରେ ବିଶ୍ୱବିଦ୍ୟାଳୟର ଭାଷା ସାହିତ୍ୟ ବିଭାଗର ଦାୟିତ୍ୱ ସମଧିକ । ସମ୍ବଲପୁର ସମେତ ଓଡ଼ିଶାର ପଶ୍ଚିମାଞ୍ଚଳର ଲୋକସାହିତ୍ୟ, ଲୌକିକ ବ୍ୟବହାରରେ ଭାଷାଗତ ବୈଶିଷ୍ଟ୍ୟକୁ ମାନ୍ୟତା ଦେଲେ ମୂଳ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସଂବୃଦ୍ଧି ସାଧିତ ହେବ । ଏ କ୍ଷେତ୍ରରେ ବିଶ୍ୱବିଦ୍ୟାଳୟ ପକ୍ଷରୁ ହେଉଥିବା ଅନୁଶୀଳନ ଓ ଗବେଷଣାକୁ ଅଧିକ ସକ୍ରିୟ କରି ପାରିଲେ ଓଡ଼ିଆ ଭାଷା ସାହିତ୍ୟ ସମୃଦ୍ଧ ହେବ ।

ଶ୍ରୀନିବାସ ମିଶ୍ର



ଡକ୍ଟର ଆଦ୍ୟକନ୍ଦ ସାହୁ
ବିଭାଗୀୟ ମୁଖ୍ୟ



- ଆମ ବିଦ୍ୟା ମନ୍ଦିରର ଆଚାର୍ଯ୍ୟ ଗଣ -



ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ—୧୯୯୪



**ପ୍ରଫେସର ଡ଼କ୍ଟର ଗୋପାଳଚନ୍ଦ୍ର ମିଶ୍ର** ହେଉଛନ୍ତି ଉପାଧ୍ୟୁଙ୍କର ଓଡ଼ିଆ ବିଭାଗର ପ୍ରଥମ ପ୍ରଫେସର ଓ ବିଭାଗୀୟ ମୁଖ୍ୟ । ତାଙ୍କରି ଉଦ୍ୟମରେ ବିଭାଗ ପରିଣତିରେ ଆଜି ଏକ ସର୍ବଭାରତୀୟ ମାନ୍ୟତା ଲାଭ କରିଛି ।

ସେ ପ୍ରାଦେଶିକ ତଥା ଜାତୀୟ ସ୍ତରର ଜଣେ ବିଶିଷ୍ଟ ଲେଖକ ଓ କବି । ଓଡ଼ିଆ କାବ୍ୟଧାରାରେ ତାଙ୍କ ସରସ କବିତା କେତୋଟି ଦିନେ ବହୁ ପାଠକଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା ।

ଆଜି ଏହି ଶୁଭ ଅବସରରେ ଓଡ଼ିଆ ବିଭାଗର ପରିବାର ବର୍ଗ ସେହି ଅମର ଆତ୍ମା ଉଦ୍ଦେଶ୍ୟରେ ଭକ୍ତିପ୍ଲୁତ ଶ୍ରଦ୍ଧା ନିବେଦନ କରୁଛି ।

# ବିଭାଗ ଇତିହାସରେ ପଚିଶ ବର୍ଷ

ପ୍ରଥମେ ବିଭାଗର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଆୟୋଜିତ ରଜତ ଜୟନ୍ତୀ ସମାରୋହ ଅଭ୍ୟର୍ଥନା ସମିତିର ସମ୍ମାନାସ୍ପଦ ସଦସ୍ୟଙ୍କ ଉତ୍ସାହ ଓ ସହଯୋଗକୁ ଶ୍ରଦ୍ଧାର ସହିତ ସ୍ମରଣ କରି ଉକ୍ତ ବିବରଣୀ ଉପସ୍ଥାପନ କରୁଛି । ଆମ ବିଦ୍ୟାଳୟର ପ୍ରମୁଖ ଆଚାର୍ଯ୍ୟ କୁଳପତି ଶ୍ରୀଯୁକ୍ତ ଅରୁଣ କୁମାର ସାମନ୍ତରାୟ, ଆଇ. ଏ. ଏସ୍. (ଅଧ୍ୟକ୍ଷ), ଲୋକସଭା ସଦସ୍ୟ ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ, ଡାକ୍ତର କୃପାସିନ୍ଧୁ ଭୋଇ, ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ, ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ, ବିଧାନ ସଭା ସଭ୍ୟ ଶ୍ରୀ ଯଜ୍ଞେଶ୍ୱର ବାବୁ, ପ୍ରଫେସର ଡକ୍ଟର ଗୋପବନ୍ଧୁ ବେହେରା, ପ୍ରଫେସର ଡକ୍ଟର ମାଧବ ଚନ୍ଦ୍ର ଦାଶ, ପ୍ରଫେସର ଡକ୍ଟର ପ୍ରବୋଧ କୁମାର ମିଶ୍ର, କୁଳ ସଚିବ ଶ୍ରୀ ଆଇଜାକ ବେହେରା, ଡକ୍ଟର ଆଦିକନ୍ଦ ସାହୁ (ବିଭାଗୀୟ ମୁଖ୍ୟ ତଥା ଆବାହକ) ପ୍ରମୁଖ ରୌପ୍ୟ ଜୟନ୍ତୀ ଅଭ୍ୟର୍ଥନା ସମିତିର ସମ୍ମାନାସ୍ପଦ ସଦସ୍ୟ ଥିଲେ । ସେମାନଙ୍କ ସଦିଚ୍ଛା ଓ ସହଯୋଗ ବ୍ୟତୀତ ଆମେ ଏ ପ୍ରକାର ଉତ୍ସବ ଅନୁଷ୍ଠାନର ଆୟୋଜନ କରି ପାରି ନଥାନ୍ତୁ ।

ଗତ ପଚିଶ ବର୍ଷର ବିଭାଗୀୟ ଇତିହାସ ନିହାତି ଘଟଣା ବହୁଳ ନହେଲେ ମଧ୍ୟ ଅନେକ କୃତିତ୍ୱ ଓ ସାଫଲ୍ୟରେ ଏକାନ୍ତ ଅବିସ୍ମରଣୀୟ ହୋଇପାରିଛି । ସମ୍ବଲପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗ ୧୯୬୮ ମସିହାରେ ତା'ର ପ୍ରଥମ କାର୍ଯ୍ୟ ଆରମ୍ଭ କରିଥିଲା ସମ୍ବଲପୁର ସହରର ସମଲେଶ୍ୱରୀ ଦେବୀଙ୍କ ପରିସର ସନ୍ନିକଟ ପାଟଣା ହାଉସ୍‌ରେ ।

ବିଭାଗ ତା'ର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଏକାନ୍ତ ନିଷ୍ଠା ଓ ଶୁଚିତାର ସହିତ ରଜତ ଜୟନ୍ତୀ ଉତ୍ସବ ପାଳନ କରୁଛି । ଏହି ଉପଲକ୍ଷେ ଆମ ବିଭାଗ ସାହିତ୍ୟ ଆଲୋଚନା, ସ୍ମରଣୀୟ କବି ଗଂଗାଧର ଓ ଭୀମ ଭୋଇଙ୍କ ଜୀବନ ଓ ସାହିତ୍ୟ କୃତି ସଂପର୍କିତ ପାଠଚକ୍ର, ସଂଗୀତ ବିଚିତ୍ରା, ଲୋକନୃତ୍ୟ ଓ ଗୀତ ପରିବେଷଣ ତଥା ଉଦ୍‌ଘାଟନ ଉତ୍ସବ ସହିତ ଆମ ପରିବାରର ପ୍ରାଜ୍ଞ ଆଚାର୍ଯ୍ୟ ତଥା ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀ ଥିବା ଓଡ଼ିଶା ତଥା ଓଡ଼ିଶା ବାହାରର ବିଶ୍ୱବିଦ୍ୟାଳୟ ତଥା ମହାବିଦ୍ୟାଳୟର ଅବସର ପ୍ରାପ୍ତ ପ୍ରାଜ୍ଞ ପ୍ରଫେସର ମାନଙ୍କୁ ଉପାୟନ ତଥା ସମ୍ବର୍ଦ୍ଧନା ଜ୍ଞାପନ କରିବା ଆଦି ବିଭିନ୍ନ ଚିତ୍ତାକର୍ଷକ ଅନୁଷ୍ଠାନ ଆୟୋଜନ କରିଛି ।

ଏତଦ୍ ଭିନ୍ନ ବିଭାଗର ମୁଖପତ୍ର 'ଶତଭିଷା'ର ରଜତ ଜୟନ୍ତୀ ସଂଖ୍ୟା ତଥା ଏକ ବର୍ଣ୍ଣାଢ୍ୟ ସ୍ମରଣିକା ଏହି ଉପଲକ୍ଷେ ବିଭାଗ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି । ବିଭାଗ ତାର ସୀମିତ ସମ୍ବଳ ଭିତରେ ଏ ସମସ୍ତ କାର୍ଯ୍ୟକ୍ରମ ସୁଷ୍ଠୁରୂପେ ନିର୍ବାହ କରିପାରିଛି । ବିଭାଗର ଅନ୍ୟାନ୍ୟ— ସତୀର୍ଥ ଅଧ୍ୟାପକ ଅଧ୍ୟାପିକାଙ୍କ ଏକାନ୍ତ ଅନୁରାଗମୟ ତତ୍ପରତା ତଥା ଛାତ୍ର-ଛାତ୍ରୀମାନଙ୍କ ଅକୃତ୍ରିମ ଆନ୍ତରିକତା ଯୋଗୁଁ ବିଭାଗ ତା'ର ରଜତ ଜୟନ୍ତୀ ପାଳନର ଉଲ୍ଲେଖଯୋଗ୍ୟ ସଫଳତା ଲାଭ କରିଛି ।

ଯେଉଁ ବିଦ୍ୱାନ ଆଚାର୍ଯ୍ୟ ଗଣଙ୍କୁ ରଜତ ଜୟନ୍ତୀ ଉପଲକ୍ଷେ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇ ସେମାନଙ୍କ ଦୀର୍ଘଦିନର ସାରସ୍ୱତ ସାଧନା ଓ କୃତିତ୍ୱକୁ ଶ୍ରଦ୍ଧା ଓ ସମ୍ମାନର ସହିତ ସ୍ମରଣ କରାଯାଇ ମାନପତ୍ର ପ୍ରଦାନ କରାଯାଇଥିଲା ସେମାନେ ହେଲେ ବିଦ୍ୱାନ ବୟୋଜ୍ୟେଷ୍ଠ ପ୍ରଫେସର ଡକ୍ଟର କୁଂଜ ବିହାରୀ ତ୍ରିପାଠୀ, ପ୍ରାଜ୍ଞ ପ୍ରଫେସର ଡଃ କାହ୍ନୁଚରଣ ମିଶ୍ର, ସୁଧୀ ସମାଲୋଚକ ପ୍ରଫେସର ଡଃ କୃଷ୍ଣ ଚରଣ ସାହୁ, ସୁଲେଖକ ପ୍ରଫେସର ଶ୍ରୀନିବାସ ମିଶ୍ର, ବିଶିଷ୍ଟ ସାହିତ୍ୟ ସମାଲୋଚକ ପ୍ରଫେସର ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ।

ସମ୍ବର୍ଦ୍ଧନା ଦିଆଯାଇଥିବା ଯେଉଁ ବିଦ୍ୱାନ ପ୍ରଫେସର୍ ମାନେ ସେଦିନ ଆମ ବିଭାଗରେ ଉପସ୍ଥିତ ହୋଇ-ପାରିନଥିଲେ ସେମାନେ ହେଲେ ଖ୍ୟାତିସଂପନ୍ନ ସମାଲୋଚକ ଓ କବି ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ବିଶିଷ୍ଟ ଗବେଷକ ବିଶ୍ୱଭାରତୀର ପ୍ରଫେସର ଡକ୍ଟର ଖଗେଶ୍ୱର ମହାପାତ୍ର, ସୁଲେଖକ ଓ ସମାଲୋଚକ ପ୍ରଫେସର ଡକ୍ଟର ନରେନ୍ଦ୍ର ନାଥ ମିଶ୍ର, ଗବେଷକ ଡକ୍ଟର ବେଣୀ ମାଧବ ପାଢୀ ତଥା ଏହି ସମୟର ପ୍ରଖ୍ୟାତ ସାହିତ୍ୟ ସମାଲୋଚକ ଡକ୍ଟର ନଟବର ସାମନ୍ତରାୟ ।

୧୯୯୨-୯୩ ତଥା ୧୯୯୩-୯୪ ଦୀର୍ଘ ଦୁଇଟି ଶିକ୍ଷାବର୍ଷ ମଧ୍ୟରେ ଯେଉଁ ଉତ୍ସବ ଅନୁଷ୍ଠାନ ସବୁ ଅନୁଷ୍ଠିତ ହୋଇଛି ତାହା ବିଭାଗର ଅଧ୍ୟାପକ-ଅଧ୍ୟାପିକା ତଥା ଛାତ୍ର ଛାତ୍ରୀମାନଙ୍କୁ ଗତ ୨୫ ବର୍ଷର ସ୍ମୃତିଚୟନ କରିବା ପାଇଁ ଯେ ପ୍ରୋତ୍ସାହିତ କରିଛି ତା' ନୁହେଁ, ବରଂ ବିଭାଗର ଅଧ୍ୟାପନା ତଥା ଗବେଷଣାକୁ ଆହୁରି ପ୍ରସାରିତ କରିବା ପାଇଁ ପ୍ରବୋଧିତ କରିଛି ।

ଉଲ୍ଲିଖିତ ସମୟ ଭିତରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଆର୍ଥିକ ସହାୟତା କ୍ରମେ ବିଭାଗ ଦୁଇ ଦୁଇଟି ମାରିମାର୍ଜନ ପାଠ୍ୟକ୍ରମର ଆୟୋଜନ କରିଥିଲା । ଗତ ଦୁଇ ବର୍ଷ ମଧ୍ୟରେ ଓଡ଼ିଶାର ଯେଉଁ ବିଶିଷ୍ଟ ସାରସ୍ୱତ ପୁରୁଷ ତଥା ପ୍ରାଜ୍ଞ ଗବେଷକ ଓ ସୁଧୀ ସାହିତ୍ୟ ସମାଲୋଚକ ବିଭାଗ-ପରିଦର୍ଶନରେ ଆସିଛନ୍ତି ସେମାନେ ହେଲେ :— ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ କବି - ଶ୍ରୀ ଜୟନ୍ତ କୁମାର ମହାପାତ୍ର, ଡଃ. ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଡଃ କାହ୍ନୁଚରଣ ମିଶ୍ର, କବି ସୌଭାଗ୍ୟ କୁମାର ମିଶ୍ର, ଡ. କୃଷ୍ଣ ଚରଣ ବେହେରା, ସୁଲେଖକ ଶ୍ରୀ ଚିତ୍ତରଂଜନ ଦାସ, ଲୋକପ୍ରିୟ ଔପନ୍ୟାସିକ ଡ. ବିଭୂତି ପଟ୍ଟନାୟକ, ପ୍ରାଜ୍ଞ ସମାଲୋଚକ ଡ. ନିତ୍ୟାନନ୍ଦ ଶତପଥୀ, ସୁଧୀ ସମାଲୋଚକ ତଥା ଗଳ୍ପକାର ଡ. ଦାସରଥି ଦାସ, ଗବେଷକ ଡ. ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର ଡ. ଶ୍ରୀନିବାସ ମିଶ୍ର, ବିଦ୍ୱାନ ଗବେଷକ ପ୍ରଫେସର ଡଃ ବିଦ୍ୟୋତକେଶ ତ୍ରିପାଠୀ, ବିଶିଷ୍ଟ ଆସାମୀ କବି ଶ୍ରୀ ନବକାନ୍ତ ବରୁଆ, ଡକ୍ଟର ବୈଷ୍ଣବ ଚରଣ ସାମଲ, ପ୍ରଫେସର ହଳଧର ପଣ୍ଡା, ଡକ୍ଟର ମଧୁସୂଦନ ପତି, ପ୍ରଫେସର ରବି ଶଙ୍କର ମିଶ୍ର, ଡକ୍ଟର ଅନନ୍ତ ଚରଣ ଶୁକ୍ଳ ।

ଗତ ପଚିଶ ବର୍ଷର ବିଭାଗ ଇତିହାସ ଆମକୁ ଆଗକୁ ଯିବାପାଇଁ ଯେଉଁ ପ୍ରୋତ୍ସାହନ ଦେଇଛି ତା'ର ପଟାନ୍ତର ନାହିଁ । ଆମ ଚିନ୍ତା ଚେତନା, ଆମ ସ୍ୱପ୍ନ ଓ ସୃଜନ ଶୀଳତାର ତୀର୍ଥ ହେଉଛି ଆମ ବିଭାଗ । ଛାତ୍ରଛାତ୍ରୀମାନେ ଗତ ପଚିଶ ବର୍ଷର ବିଭାଗ ଇତିହାସକୁ ପର୍ଯ୍ୟବେକ୍ଷଣ କରିବାର ଅନନ୍ୟ ସୁଯୋଗ ଲାଭ କରି ନିଜକୁ ଧନ୍ୟ ତଥା ଭାଗ୍ୟବାନ·ଭାଗ୍ୟବତୀ ମନେ କରିଛନ୍ତି । ସେମାନେ ବିଭାଗର ପରିସରକୁ ନାନା-ମନେ କେବଳ ଗହଳ ଚହଳ ତଥା ଉତ୍ସବ ମୁଖର କରିଛନ୍ତି ତା' ନୁହେଁ, ସେମାନେ ସେମାନଙ୍କ ସୃଜନ-ଶୀଳତାର ସ୍ମାରକୀ ସ୍ୱରୂପ ଏକ ବର୍ଣ୍ଣାଢ୍ୟ ପ୍ରାଚୀର ପତ୍ରିକା 'ସଜଫୁଲ'ର - ଅଭିଜାତ ପ୍ରକାଶନ କରିଛନ୍ତି । 'ସଜଫୁଲ'ର ପୃଷ୍ଠା ଏହି ସମୟରେ ଛାତ୍ର ଛାତ୍ରୀଙ୍କ ଦୀପ୍ତ ଆବେଗ, ସୃଷ୍ଟିଧର୍ମିତା, ସଦିଚ୍ଛା ତଥା ଶିବ ସଂକଳ୍ପ ଦ୍ୱାରା ବର୍ଣ୍ଣୋଜ୍ଜ୍ୱଳ ହୋଇ ଉଠିଛି ।

ଓଡ଼ିଶାର ବାଣୀ ବରପୁତ୍ର ମାନଙ୍କର ଜୟନ୍ତୀ ଉତ୍ସବ ପାଳନ ପରିପ୍ରେକ୍ଷୀରେ ବିଭାଗ ବିଗତ ବର୍ଷ ମାନଙ୍କରେ ଯେଉଁ ସବୁ ଆଲୋଚନା ଚକ୍ରର ଆୟୋଜନ କରିଥିଲା ସେଥିରେ ପଠିତ ଅନେକ ପ୍ରବନ୍ଧ ଓଡ଼ିଆ ସମାଲୋଚନା ସାହିତ୍ୟର ନବ ଦିଗ ଉନ୍ମୋଚନ କରିବା ସଙ୍ଗେ ସଙ୍ଗେ ବହୁ ସାହିତ୍ୟ କୃତିର ଅନାଲୋଚିତ ଦିଗ୍ ଉଦ୍‌ଘାଟନ କରିପାରିଛି ।

ଆମ ବିଭାଗର ପ୍ରଥମ ପ୍ରଫେସର ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର, ଏମ୍.ଏ., ଡ.ଲିଟ୍., ଙ୍କ ନେତୃତ୍ୱରେ ଓଡ଼ିଆ ବିଭାଗ ବହୁ ଉନ୍ନତି ପଥରେ ଗତି କରିଛି । ସେ ଗତିଶୀଳ ବ୍ୟକ୍ତିତ୍ୱର ଅଧିକାରୀ । ସର୍ବଭାରତୀୟ

ସ୍ତରରେ ଜଣେ କବି ଓ ଗଳ୍ପକାର ଭବରେ ତାଙ୍କର ପ୍ରତିଷ୍ଠା କମ ନ ଥିଲା । ଓଡ଼ିଶାରେ ତାଙ୍କର ପ୍ରଖ୍ୟାତି ସରସ କବିତା ରଚନା କରିଥିବା ଜଣେ କବି ଭବରେ । ଇଂରାଜୀରେ ଲେଖିବା ତଥା କହିବା ପ୍ରତି ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା । ସାରସ୍ୱତ ଜଗତର ବହୁ ଖବର ତାଙ୍କ ପାଖରେ ଥିଲା । ଭରତର ବୁଦ୍ଧିବାଦୀ ପଣ୍ଡିତ, ବହୁ ପ୍ରତିଷ୍ଠିତ କବି ତଥା ସୁଧୀ ସାହିତ୍ୟ ସମାଲୋଚକଙ୍କ ସହିତ ତାଙ୍କର ବ୍ୟକ୍ତିଗତ ପତ୍ରାଳାପ ଥିଲା ।

ଆମ ବିଭଗକୁ ଗତ ପଚିଶ ବର୍ଷ ଭିତରେ ଯେଉଁମାନେ ପରିଦର୍ଶୀ ଅଧ୍ୟାପକ ଭବେ ତଥା ବିଭିନ୍ନ ଜାତୀୟ ସଂପାନରେ ଯୋଗଦାନ କରିବାକୁ ଆସିଛନ୍ତି ସେମାନେ ହେଲେ କଲିକତା ବିଶ୍ୱବିଦ୍ୟାଳୟର ବଂଗଳା ବିଭଗର ପୂର୍ବତନ ମୁଖ୍ୟ ବିଶିଷ୍ଟ ଲୋକ ସାହିତ୍ୟ ଗବେଷକ ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ, ଭରତୀୟ ଭଷା ଗବେଷଣା ପ୍ରତିଷ୍ଠାନର ଅଧ୍ୟକ୍ଷ ଶ୍ରୀ ପ୍ରଭକର ମାଚୱେ, ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ଅର୍ଜନ କରିଥିବା ପାଲି ସାହିତ୍ୟ ଗବେଷକ ସ୍ୱର୍ଗତ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ବିଶିଷ୍ଟ କବି ଓ ଲୋକ ସାହିତ୍ୟ ଗବେଷକ ସ୍ୱର୍ଗତ ଲୋକରତ୍ନ ଡକ୍ଟର କୁଞ୍ଜ ବିହାରି ଦାଶ, ଯୁଗ ପ୍ରବର୍ତ୍ତକ ଆଧୁନିକ କବି ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ସୁସାହିତ୍ୟିକ ନିତ୍ୟାନନ୍ଦ ମହାପାତ୍ର ବିଶିଷ୍ଟ ପ୍ରଗତିବାଦୀ କବି ସ୍ୱର୍ଗତ ଅନନ୍ତ ପଟ୍ଟନାୟକ, କବି ରାଜେନ୍ଦ୍ର କିଶୋର ପଣ୍ଡା, ଭରତର ତୁଳନାତ୍ମକ ସାହିତ୍ୟର ବିଦ୍ୱାନ ସମାଲୋଚକ ଯାଦବପୁର ବିଶ୍ୱବିଦ୍ୟାଳୟର ପୂର୍ବତନ ଡିନ ଓ କୁଳପତି ତଥା କବି ସ୍ୱର୍ଗତ ଜଗନ୍ନାଥ ଚକ୍ରବର୍ତ୍ତୀ, ବିଶିଷ୍ଟ ଲୋକ ସାହିତ୍ୟ ଗବେଷକ ଡକ୍ଟର ଜବାହାର ଲାଲ ହାଣ୍ଡୋ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ହିନ୍ଦି ସାହିତ୍ୟ ବିଭଗର ପୂର୍ବତନ ମୁଖ୍ୟ ଡକ୍ଟର କୃଷ୍ଣଦେବ ଉପାଧ୍ୟାୟ, ପ୍ରଫେସର କୁମାର ଚୁଣ୍ଡାଲ, ଡକ୍ଟର ଦୁଲାଲ ଚୌଧୁରୀ, କବି ତଥା ନାଟ୍ୟକାର ଶ୍ରୀ ଯଦୁନାଥ ଦାସ ମହାପାତ୍ର, ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ଭୁବନେଶ୍ୱର ବେହେରା, ଶ୍ରୀ ସୋମେଶ୍ୱର ବେହେରା, ଗାଳ୍ପିକ ରାମଚନ୍ଦ୍ର ବେହେରା; ଶ୍ରୀ ଜଗଦୀଶ ମହାନ୍ତି, ଗବେଷକ ଡକ୍ଟର ଶ୍ୟାମସୁନ୍ଦର ମହାପାତ୍ର, ବିଖ୍ୟାତ ଇଂରାଜୀ ଅଧ୍ୟାପକ ତଥା ମୈଥିଳି ସାହିତ୍ୟ ଗବେଷକ ପ୍ରଫେସର ଡଃ ଜୟକାନ୍ତ ମିଶ୍ର, ହିନ୍ଦି ସାହିତ୍ୟର କୃତୀ ଅଧ୍ୟାପକ ଡକ୍ଟର ଅର୍ଜୁନ ଶତପଥୀ, ହିନ୍ଦି ସାହିତ୍ୟର ସୁଲେଖକ ଡକ୍ଟର ରାମ ପ୍ରସାଦ ପୁରୋହିତ ।

'ସାହିତ୍ୟ ଜରିଆରେ ସାମାଜିକ ଉନ୍ନୟନ ତଥା ଜାତୀୟ ସଂହତି ତଥା ସନ୍ଥକବି ସୁରଦାସଙ୍କ ସାହିତ୍ୟ ଓ ଜୀବନୀ' ବିଷୟକ ସର୍ବଭରତୀୟ ସ୍ତରର ଜାତୀୟ ସଂପାନ ଅନୁଷ୍ଠିତ ହୋଇଥିଲା । ଏଥିରେ ଭରତ ବର୍ଷର ବିଭିନ୍ନ ପ୍ରାନ୍ତରୁ ବିଶିଷ୍ଟ ଗବେଷକ ତଥା ତଦ୍‌ବିଦ ମାନେ ଯୋଗଦାନ କରିଥିଲେ । ଏହି ଦୁଇଟି ଅଭି-ଜାତ ଜାତୀୟ ସଂପାନର ପୂର୍ବତନ ଆବାହକ ଥିଲେ ବିଭଗୀୟ ପ୍ରଫେସର ସ୍ୱର୍ଗତ ଗୋପାଳ ଚନ୍ଦ୍ର ମିଶ୍ର ।

ଅତୀତରେ ଆମ ବିଭଗ ଆନୁକୂଲ୍ୟରେ ପ୍ରତିବର୍ଷ ବିଶ୍ୱବିଦ୍ୟାଳୟ ଅନୁଦାନରେ ସ୍ୱଭବ କବି ଗଙ୍ଗାଧରଙ୍କ ଜୟନ୍ତୀ ସମାରୋହରେ ପାଳିତ ହେଉଥିଲା । ବିଶ୍ୱ ବିଦ୍ୟାଳୟର ଅନନ୍ୟ ସାହିତ୍ୟ ପତ୍ର 'ସପ୍ତର୍ଷି'ର ସଂପାଦନା ମଣ୍ଡଳୀରେ ବସ୍ତୁତଃ ଆମ ବିଭଗର ସମସ୍ତ ଅଧ୍ୟାପକ ସଦସ୍ୟ ଥିଲେ । ଆମ ବିଭଗରୁ ଆମର ମୁଖପତ୍ର 'ଶତଭିଷା' ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ପ୍ରଫେସର ଡଃ ଗୋପାଳ ଚନ୍ଦ୍ର ମିଶ୍ରଙ୍କ ସଂପାଦକ-ତ୍ୱରେ 'ବସୁନ୍ଧରା' ମଧ୍ୟ ପ୍ରକାଶିତ ହେଉଥିଲା; ଯେଉଁ ପତ୍ରିକାର ପୃଷ୍ଠା ଆମ ବିଭଗର ଅଧ୍ୟାପକ ଅଧ୍ୟାପିକା ଗବେଷକ ତଥା ଛାତ୍ର ଛାତ୍ରୀମାନଙ୍କ ଲେଖାରେ ମଣ୍ଡିତ ହେଉଥିଲା ।

ଆମ ବିଭଗର ଡ଼.ଆର୍.ଏସ୍., ଡ଼.ଏସ୍.ଏ. ଆଦି ବିଶେଷ ଗବେଷଣା ପ୍ରକଳ୍ପ ତାଙ୍କରି ଉଦ୍ୟମରେ ଆରମ୍ଭ ହୋଇଥିଲା । ତାଙ୍କ ଉଦ୍ୟମରେ ପଶ୍ଚିମ ଓଡ଼ିଶାର ଲୋକଗୀତ ତଥା ଲୋକନୃତ୍ୟର ବିଶେଷ

ଗବେଷଣା କାର୍ଯ୍ୟ ହୋଇଥିଲା । ବରପାଲି ସନ୍ନିକଟ କୁମ୍ଭାରୀରେ ତଦାନିନ୍ତନ କୁଳପତି ପ୍ରଫେସର ଭୁବନେଶ୍ୱର ବେହେରାଙ୍କ ସଭାପତିତ୍ୱରେ ଡଃ ମିଶ୍ର ଲୋକ ସାହିତ୍ୟ ଓ ସଂସ୍କୃତିର ଏକ ଅନନ୍ୟ ଆଲୋଚନା ଚକ୍ରର ଆୟୋଜନ କରି ଲୋକ ସାହିତ୍ୟର ସଂଗ୍ରହ ପାଇଁ ବୃହତ୍ତର ଲୋକ ସଂପର୍କ ସୃଷ୍ଟି କରିଥିଲେ । ଆମ ବିଭାଗର ଲକ୍ଷ୍ୟ ଓ ଅଭିଳାଷ ଉକ୍ତ ଉତ୍ସବ ଆୟୋଜନରେହିଁ ପ୍ରତିଫଳିତ ହୋଇଥିଲା, ସେଦିନର ସେଇ ଉତ୍ସବ ଆମ ବିଭାଗର ତରୁଣ ପ୍ରବୀଣ ଅନେକଙ୍କୁ ଆଜି ପର୍ଯ୍ୟନ୍ତ ପ୍ରବୋଧିତ କରୁଛି ।

ବିଭାଗର ପୂର୍ବତନ ପ୍ରାଧ୍ୟାପକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଯିଏ ଆମ ବିଭାଗର ପ୍ରଥମ ଶିକ୍ଷକ ରୂପେ ନିଯୁକ୍ତି ଲାଭ କରିଥିଲେ ତାଙ୍କର ଅବଦାନ ଓ ତାଙ୍କର ନିମଗ୍ନମାନତାକୁ ଆମେ ଆଜି ଶ୍ରଦ୍ଧାର ସହିତ ସ୍ମରଣ କରୁଛୁ । ଜଣେ ନିଷ୍ଠାପର ତଥା ଛାତ୍ରବତ୍ସଳ ଶିକ୍ଷକ ଭାବେ ସେ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନ ଲାଭ କରି ପାରିଥିଲେ । ତାଙ୍କର ସ୍ୱାଭିମାନ, ଶାସ୍ତ୍ରଦର୍ଶିତା ତଥା ରୁଚିଶୀଳ ବ୍ୟବହାର ଆମ ବିଭାଗ ଭିନ୍ନ ଅନ୍ୟ ବିଭାଗର ଅଧ୍ୟାପକ ଅଧ୍ୟାପିକାଙ୍କୁ ମଧ୍ୟ ଆକୃଷ୍ଟ କରିଥିଲା । ଆମ ବିଭାଗରୁ ଅବସର ନେଲାପରେ ମଧ୍ୟ ବିଭାଗ ପ୍ରତି ତାଙ୍କର ଶ୍ରଦ୍ଧା ଅତୁଟ ରହିଛି ଓ ବିଭାଗ ମଧ୍ୟ ତାଙ୍କ ସହିତ ସେଇ ପାରିବାରିକ ଆତ୍ମୀୟତାର ବନ୍ଧନ ତୁଟାଇ ନାହିଁ । ତାଙ୍କର ପ୍ରାକ୍ତନ ଛାତ୍ରମାନେ ଆଜି ପର୍ଯ୍ୟନ୍ତ ତାଙ୍କ ଅଧ୍ୟାପନାର ନିଷ୍ଠା ଓ ଉଚ୍ଚ ମାନକୁ ବିସ୍ମରିଯାଇ ପାରିନାହାନ୍ତି । ଆନନ୍ଦର ସହିତ ଆଜି ଆମେ ରଜତ ଜୟନ୍ତୀ ଉତ୍ସବ ଉପଲକ୍ଷେ ପ୍ରକାଶିତ ଆମର 'ସ୍ମରଣିକା' ରେ ଏକଥା ଉଲ୍ଲେଖ କରିବାକୁ ଯାଉଛୁ, ଯେ ପ୍ରଫେସର ଉଦ୍‌ଗାତା ଆମ ବିଭାଗ ତରଫରୁ ଆୟୋଜିତ ସମସ୍ତ ଉତ୍ସବରେ ଯୋଗଦାନ କରିଛନ୍ତି ।

ଆମ ବିଭାଗର ଆଉ ଜଣେ ସ୍ମରଣୀୟ ଶିକ୍ଷକ ହେଉଛନ୍ତି ଡକ୍ଟର ବାଳକୃଷ୍ଣ ଶତପଥୀ । ବିଭାଗ ପ୍ରତି ତାଙ୍କର ଅବଦାନ ଆଜି ଏଇ ଅବସରରେ ଆମେ ବିଶେଷ ଭାବେ ସ୍ମରଣ କରୁଛୁ । ସେଥିଲେ ସମସ୍ତଙ୍କ ପ୍ରତି ସ୍ନେହଶୀଳ ଜଣେ ନିଷ୍ଠାପର ଶିକ୍ଷକ ।

ସ୍ୱର୍ଗତ ଡଃ ଗୋପାଳ ଚନ୍ଦ୍ର ମିଶ୍ର, ଅଧ୍ୟାପକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ତଥା ଡକ୍ଟର ବାଳକୃଷ୍ଣ ଶତପଥୀଙ୍କ ବ୍ୟତୀତ ଆମ ବିଭାଗରେ ବର୍ତ୍ତମାନ ଯେଉଁ ଶିକ୍ଷକମାନେ ଶିକ୍ଷାଦାନରେ ବ୍ରତୀ ଅଛନ୍ତି ସେମାନେ ହେଲେ—

ପ୍ରଫେସର ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଏମ୍. ., ଡ.ଲିଟ.

ପ୍ରଫେସର ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ, ଏମ୍.ଏ., ଡ.ଲିଟ.

ପ୍ରଫେସର ଡକ୍ଟର ବୈରାଗୀ ଚରଣ ଜେନା, ଏମ୍ ଏ., ପି.ଏଚ୍.ଡ.

ପ୍ରାଧ୍ୟାପକ ଡକ୍ଟର ଆଦିକନ୍ଦ ସାହୁ, ଏମ୍.ଏ. (ଓଡ଼ିଆ), ଏମ୍.ଏ. (ଇଂରାଜୀ), ପି.ଏଚ.ଡ , ଡ.ଲିଟ୍.

ପ୍ରାଧ୍ୟାପକ ଡକ୍ଟର ସଚ୍ଚିଦାନନ୍ଦ ମିଶ୍ର, ଏମ୍.ଏ., ଡ.ପି.ଲିଙ୍ଗ୍ (ଦିଲ୍ଲୀ), ପି.ଏଚ୍.ଡ.

ପ୍ରାଧ୍ୟାପକ ଡକ୍ଟର କୁମୁଦ ରଞ୍ଜନ ପାଣିଗ୍ରାହୀ, ଏମ୍.ଏ , ପି.ଏଚ୍.ଡ., ଡ.ଲିଟ୍

ପ୍ରାଧ୍ୟାପକ ଡକ୍ଟର ସମର ମୁଦାଲି, ଏମ୍.ଏ , ଏମ୍.ଫିଲ୍., ଏଲ୍.ଏଲ୍.ବି , ପି.ଏଚ୍.ଡ.

ଅଧ୍ୟାପକ ଡକ୍ଟର ଅଶୋକ କୁମାର ଦାଶ, ଏମ୍.ଏ., ଏମ୍.ଫିଲ, ପି.ଏଚ୍.ଡ

ଅଧ୍ୟାପିକା ଡକ୍ଟର କୁମାରୀ ପ୍ରଭାତୀ ରଥ, ଏମ୍.ଏ., ଏମ୍ ଫିଲ., ପି.ଏଚ୍ ଡ

ଏତଦ୍ ବ୍ୟତୀତ ଡକ୍ଟର ନିମାଇଁ ଚରଣ ପଣ୍ଡା, ଏମ୍.ଏ., ପି ଏଚ୍.ଡ. ଗବେଷଣା ସହାୟକ ଅଛନ୍ତି ।

ଶ୍ରୀ ଗଜାନନ ମହାରଣା, ଆଇ.ଏ.

ଶ୍ରୀ ଯୋଗେଶ ଚନ୍ଦ୍ର ବରାଇ, ବି.କମ୍,

ଶ୍ରୀ ପ୍ରଶାନ୍ତ କୁମାର ପାଢ଼ଯୋଶୀ, ବି.କମ୍. (ଅନର୍ସ), ଆଇ.ସି.ଓ.ଏ.ଆଇ (ଇଣ୍ଟର) ଆଦି ତିନିଜଣ

ତୃତୀୟ ଶ୍ରେଣୀ କର୍ମଚାରୀ ଅଫିସ କାର୍ଯ୍ୟ ତୁଲାଉଛନ୍ତି । ଶ୍ରୀ ପ୍ରଭୁଦତ୍ତ ନାୟକ (ମେଟ୍ରିକ) ବିଭାଗର ଚତୁର୍ଥ ଶ୍ରେଣୀ କର୍ମଚାରୀ ଅଛନ୍ତି । ସ୍ୱର୍ଗତା ସୂର୍ଯ୍ୟକାନ୍ତ ପଟେଲ ଆମ ବିଭାଗର କ୍ୟୁରେଟର ଥିଲେ । ତାଙ୍କ ପରେ ଡକ୍ଟର ପ୍ରଭାତୀ ରଥ କିଛି କାଳ କ୍ୟୁରେଟର ପଦବୀରେ ରହିଥିଲେ । ଏହି ବିଭାଗରେ ଶ୍ରୀ ଭକ୍ତବନ୍ଧୁ ପଣ୍ଡା ପ୍ରଥମେ ବରିଷ୍ଠ କିରାଣୀ ଭାବେ କାର୍ଯ୍ୟ ନିର୍ବାହ କରୁଥିଲେ । ଶ୍ରୀ ଫକୀର ମାନିଗ, ସ୍ୱର୍ଗତ ଗଣେଶ କୁସୁମ, ଶ୍ରୀ ଗୋବର୍ଦ୍ଧନ ସାହୁ ଏବଂ ଶ୍ରୀ କାହ୍ନୁଚରଣ ପାଣିଗ୍ରାହୀ ବିଭାଗରେ ପୂର୍ବରୁ ଚତୁର୍ଥ ଶ୍ରେଣୀ କର୍ମଚାରୀ ଥିଲେ ।

ଏତଦ୍ ବ୍ୟତୀତ ଡକ୍ଟର ମନୀନ୍ଦ୍ର କୁମାର ମହାନ୍ତି, ଡକ୍ଟର ନିମାଇଁ ଚରଣ ପଣ୍ଡା, ଡକ୍ଟର ଶ୍ୟାମସୁନ୍ଦର ଧର, ଡକ୍ଟର ଅଶୋକ କୁମାର ଦାଶ, ଡକ୍ଟର ରଣଜିତ କୁମାର ପରିଡା ଆଦି ବିଭାଗର ଗବେଷକ ଭାବେ ଗବେଷଣା କାର୍ଯ୍ୟ କରୁଥିଲେ ।

ଶହ ଶହ ଛାତ୍ର ଛାତ୍ରୀ ଆମ ବିଭାଗରୁ ଗତ ପଚିଶ ବର୍ଷ ମଧ୍ୟରେ ଉତ୍ତୀର୍ଣ୍ଣ ହୋଇ ଯାଇଛନ୍ତି । ସମସ୍ତେ ସମସ୍ତଙ୍କ ଗୁଣରେ ଯଶସ୍ୱୀ । ମାତ୍ର ଆମ ବିଭାଗରୁ ଉତ୍ତୀର୍ଣ୍ଣ ହୋଇ ଯାଇଥିବା ଯେଉଁ କେତେଜଣ ଛାତ୍ର ଛାତ୍ରୀ ଆଜି ଓଡ଼ଶାର ସାରସ୍ୱତ କ୍ଷେତ୍ରରେ ବେଶ ପରିଚିତ ସେମାନେ ହେଲେ— ଶ୍ରୀ ରାମକୃଷ୍ଣ ସାହୁ, ଡକ୍ଟର ପ୍ରଦ୍ୟୁମ୍ନ କେଶରୀ ସେନାପତି, ଡକ୍ଟର ମଣୀନ୍ଦ୍ର କୁମାର ମେହେର, ଡକ୍ଟର ଅଶୋକ କୁମାର ମହାପାତ୍ର ପ୍ରମୁଖ । ସେମାନଙ୍କୁ ଏହି ଅବସରରେ ବିଭାଗ ଆଜି ଶ୍ରଦ୍ଧାର ସହିତ ସ୍ମରଣ କରୁଛି ।

ବିଭାଗର ରଜତ ଜୟନ୍ତୀ ଉତ୍ସବର ଉଦ୍‌ଯାପନ ଦିବସରେ ଲୋକଗୀତ ପରିବେଷଣ କରି ସମସ୍ତଙ୍କର ମନୋରଞ୍ଜନ କରିଥିବାରୁ ବିଭାଗର ପ୍ରାକ୍ତନ ଛାତ୍ର ଡକ୍ଟର ଶ୍ୟାମ ସୁନ୍ଦର ଧର, ଡକ୍ଟର ଦ୍ୱାରିକା ନାଥ ନାୟକଙ୍କୁ ମୁଁ ଏ ଅବସରରେ ସାଧୁବାଦ ଜଣାଉଛି ।

ବର୍ତ୍ତମାନ ଆମ ବିଭାଗ ନାନା ଭାବରେ ବିସ୍ତାରିତ ହୋଇଛି । ଆଜି ଆମ ବିଭାଗ ଏମ.ଏ. ଶ୍ରେଣୀର ୪୮ ଜଣ ତଥା ଏମ୍ ଫିଲ୍. ଶ୍ରେଣୀରେ ୧୫ ଜଣ ଛାତ୍ର ଛାତ୍ରୀ ଅଧ୍ୟୟନ କରିବାର ସୁଯୋଗ ସୃଷ୍ଟି ହୋଇଛି । କେତେ ଜଣ ଗବେଷକଙ୍କ ସହିତ ଟିଚ୍‌ର ଫେଲୋ ମଧ୍ୟ ବିଭାଗରେ ଭିନ୍ନ ଭିନ୍ନ ବିଷୟରେ ଗବେଷଣା ରତ । ବିଭାଗର ପ୍ରବୀଣ ତରୁଣ ଶିକ୍ଷକ ମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବହୁ ଗବେଷକ ପି.ଏଚ୍ ଡ଼. ତଥା ଡ଼.ଲିଟ୍ ଡିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ଆମ ବିଭାଗର ଶିକ୍ଷକ ମାନେ ଓଡ଼ଶାର ବିଭିନ୍ନ ପତ୍ର ପତ୍ରିକାରେ ନିୟମିତ ଲେଖକ । ଗତ ପଚିଶ ବର୍ଷ ମଧ୍ୟରେ ଆମ ବିଭାଗର ଶିକ୍ଷକ ମାନଙ୍କ ଦ୍ୱାରା ବହୁ ପ୍ରମାଣିକ ସମାଲୋଚନା ମୂଳକ ଗ୍ରନ୍ଥ ରଚିତ ହୋଇଛି ଯାହା ଓଡ଼ଶାର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ପାଠ୍ୟ ହୋଇଛି ।

ଇତି ମଧ୍ୟରେ ବିଭାଗର ଏକ ସଂଗ୍ରହାଳୟ ପ୍ରତିଷ୍ଠିତ ହୋଇଛି । ଭୀମ ଭୋଇ ତଥା ଗଙ୍ଗାଧର ମେହେର ଚେୟାର ପ୍ରତିଷ୍ଠା କରଯାଇ ସନ୍ଥକବି ଭୀମ ଭୋଇ ତଥା ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ସାହିତ୍ୟ ଓ ଜୀବନୀ ସଂପର୍କରେ ବ୍ୟାପକ ଗବେଷଣା କରିବା ପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଉଦ୍ୟମ କରିଛନ୍ତି । ମାତ୍ର ସେ ବିଷୟରେ ଅଧିକ କିଛି କରଯାଇ ପାରିନାହିଁ ।

ବିଭାଗରେ ବର୍ତ୍ତମାନ ୧) ପ୍ରାଚୀନ କାବ୍ୟକବିତା, ୨) ଆଧୁନିକ କାବ୍ୟକବିତା, ୩) ତୁଳନାତ୍ମକ ଭାରତୀୟ ସାହିତ୍ୟ, ୪) କଥା ସାହିତ୍ୟ, ୫) ନାଟ୍ୟ ସାହିତ୍ୟ; ୬) ଲୋକ ସାହିତ୍ୟ ଆଦି ଛଅଗୋଟି ବିଷୟରେ ବିଶେଷ ପତ୍ର ଅଧ୍ୟାପନାର ସୁଯୋଗ ସୃଷ୍ଟି କରଯାଇଛି ।

ପରିଶେଷରେ ଆମେ ସମସ୍ତ ବିଭାଗର ଏକ ସମୁଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ଦେଖି ସେହି ଉଦ୍ଦେଶ୍ୟରେ କର୍ତ୍ତବ୍ୟ ସଂପାଦନ କରୁଛୁଁ ।

ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ଯଦି ଏକ ଏକ ବିଦ୍ୟାମନ୍ଦିର ହୁଏ ତାହେଲେ ତା'ର ମାତୃଭାଷା ଓ ସାହିତ୍ୟ ବିଭାଗ ସେ ମନ୍ଦିରର ମୁଖଶାଳା ସଦୃଶ । ସେହି ମୁଖଶାଳା ଯେତେ ସୁଶୋଭିତ ହୋଇପାରିବ ବିଶ୍ୱବିଦ୍ୟାଳୟର ଶାସ୍ତ୍ରୀୟ ଭଙ୍ଗିମା ସେତିକି ପ୍ରକଟିତ ହୋଇପାରିବ । ମୁଖଶାଳାର ସେହି ସୁଶୋଭନର ସ୍ୱପ୍ନ ଆମକୁ ଆଗାମୀ ଦିନ ମାନଙ୍କ ପାଇଁ ବିଭୋର କରି ରଖୁ ଏହା ହିଁ କାମନା ।

ଜ୍ୟୋତିବିହାର

**ଆଦିକନ୍ଦ ସାହୁ**
ବିଭାଗୀୟ ମୁଖ୍ୟ ତଥା ଆବାହକ

# ସୂଚୀପତ୍ର





# ଏ ବିଭାଗ ଓ ମୁଁ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା

୧୯୬୭ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ବର୍ଷ । ଆରମ୍ଭରେ ଏହାର କାର୍ଯ୍ୟକ୍ରମ ସୀମିତ ଥିଲା ପରୀକ୍ଷା ପରିଚାଳନା କରିବାରେ । ପ୍ରାଥମିକ ସଂଗଠନ ସହିତ ପରୀକ୍ଷା ପରିଚାଳନାର ସୁବ୍ୟବସ୍ଥା ସଂପୂର୍ଣ୍ଣ ହେବା ପୂର୍ବରୁ ଦ୍ୱିତୀୟ କୁଳପତି ପ୍ରଫେସର ହରିବଂଶ କିଶୋର କପୂରଙ୍କ ନେତୃତ୍ୱରେ ୧୯୬୮ ମଧ୍ୟଭାଗରେ ଆରମ୍ଭ ହୋଇଗଲା ସ୍ନାତକୋତ୍ତର ଶିକ୍ଷାନିମିତ୍ତି ଆୟୋଜନ । ଗଙ୍ଗାଧର ମେହେର କଲେଜରେ ଯେଉଁ ବିଷୟରେ ସ୍ନାତକୋତ୍ତର ଶିକ୍ଷାବ୍ୟବସ୍ଥା ନଥିଲା ତା' ମଧ୍ୟରୁ ଅତ୍ୟାବଶ୍ୟକ ବିବେଚିତ ହେଲା ଆଞ୍ଚଳିକ ଭାଷା ଓଡ଼ିଆ ଏବଂ ବହୁଜନପ୍ରିୟ ରାଜନୀତି ବିଜ୍ଞାନ । ୧୯୬୮ ଜାନୁୟାରୀ ଛଅ ତାରିଖରେ ରାଷ୍ଟ୍ରପତି ଜାକୀର ହୁସେନ୍ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ ବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ସର୍ବୋଚ୍ଚ ଶିକ୍ଷାବ୍ୟବସ୍ଥା ଅଭାବ ଦେଖି ଯେଉଁ କଠୋର ମନ୍ତବ୍ୟ ଦେଇଥିଲେ ତହିଁରେ ସଂବଲପୁର ବିଶ୍ୱ-ବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ପାଇଁ ଯଥେଷ୍ଟ ପରୋକ୍ଷ ଇଙ୍ଗିତ ଥିଲା, ଯାହା ଫଳରେ ଅଗ୍ରାଧିକାର ଭିତ୍ତିରେ ଓଡ଼ିଆ ଭାଷା ସାହିତ୍ୟର ପାଳି ହେଲା ପ୍ରଥମ । ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଶିକ୍ଷାବିତ୍ କୁଳପତି ପ୍ରଫେସର କପୂରଙ୍କ ପ୍ରଗତିଶୀଳ ନିଷ୍ଠାପର ଉଦ୍ୟମରେ ସେ ଯୋଗଦେବାର ଛଅମାସ ମଧ୍ୟରେ ଯୋଜନା ସଂପୂର୍ଣ୍ଣ ହୋଇ-ଗଲା । ଘର ନାହିଁ, ପ୍ରଫେସର କପୂର ତାଙ୍କ ପାଇଁ ଉଦ୍ଦିଷ୍ଟ ଧନୁପାଲୀ ଭଡ଼ାଘରୁ ନିଜେ ଛାଡ଼ଦେଲେ ତିନୋଟି କୋଠରୀ । ୧୬+୧୬ = ୩୨ ଜଣ ଛାତ୍ରଙ୍କ ବସିବା ଭଳି ବେଞ୍ଚ୍ ଟେବୁଲ୍ ଓ ଦୁଇଖଣ୍ଡି କଳାପଟା । ଅଧ୍ୟାପକ ଭାବରେ ପ୍ରତ୍ୟେକ ବିଭାଗ ପାଇଁ ଦୁଇ ଜଣ କରି ମେହେର କଲେଜର ଅଧ୍ୟାପକଙ୍କୁ ପାରିଶ୍ରମିକ ଭିତ୍ତିରେ ନିଯୁକ୍ତି ଦିଆଗଲା । ଆରମ୍ଭ ହୋଇଗଲା ଶିଶୁ ବିଶ୍ୱବିଦ୍ୟାଳୟର ଶିକ୍ଷାଦାନୀ କାର୍ଯ୍ୟକ୍ରମ ୧୯୬୮-୬୯ ଶିକ୍ଷାବର୍ଷରୁ । ଏକ ଘରୋଇ ନିରଡମ୍ବର ପରିବେଶରେ ଧନୁପାଲୀରେ ଆରମ୍ଭ ହେଲା ସ୍ନାତକୋତ୍ତର ଓଡ଼ିଆ ଓ ରାଜନୀତି ବିଜ୍ଞାନ ଶ୍ରେଣୀ ତା ୧ । ୧୧ । ୧୯୬୮ ଦିନ । ସେ ଦିନର ଉତ୍ସାହ ଏକ ଅବିସ୍ମରଣୀୟ ସ୍ମୃତି । ସମସ୍ତଙ୍କ ଅପେକ୍ଷା ଅଧିକ ସୁଖୀ ଥିଲେ ସ୍ୱୟଂ କୁଳପତି ।

ଗଙ୍ଗାଧର ମେହେର କଲେଜ ଷ୍ଟାଫ୍‌ରୁ ଯାଇ ଯୋଗଦେଲୁଁ ଦୁଇଜଣ ଅଧ୍ୟାପକ, ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ( ସଂପ୍ରତି ବରିଷ୍ଠ ପ୍ରଫେସର ଆଚାର୍ଯ୍ୟ ) ଏବଂ ମୁଁ । ଆମ ଦୁହିଙ୍କ ମଧ୍ୟରେ ମୁଁ ଥିଲି ସିନିୟର୍, ହୋଇ-ଥିଲି ବିଭାଗୀୟ ମୁଖ୍ୟ । ରାଜନୀତି ବିଜ୍ଞାନ ପାଇଁ ଯୋଗ ଦେଲେ ଅଧ୍ୟାପକ ଆଦିତ୍ୟ ପ୍ରସାଦ ପାଢ଼ୀ ଏବଂ ଅଧ୍ୟାପକ ପଙ୍କଜ କୁମାର ପଟେଲ । କୁଳପତି କପୂର, କୁଳସଚିବ ଡକ୍ଟର ନବୀନ କୁମାର ସାହୁ ଆମେ ଚାରିଜଣ ଅଧ୍ୟାପକ ଏବଂ ଅଧ୍ୟୟନ ପାଇ ଯୋଗ ଦେଇଥିବା ଉଭୟ ବିଭାଗରୁ ମୋଟ ଛାତ୍ରଛାତ୍ରୀ ୨୪ ଜଣଙ୍କୁ ନେଇ ଅନୁଷ୍ଠିତ ହୋଇଥିଲା ବିଶ୍ୱବିଦ୍ୟାଳୟର ଗୁରୁଶିଷ୍ୟ

ପରିବାର । ସେହିମାନେ ହିଁ ଉପସ୍ଥିତଥିଲେ ସେ ଦିନ ସଭାରେ । କେତେ ଛୋଟ ସେ ସଭା, କିନ୍ତୁ କେତେ ସମ୍ଭାବନାପୂର୍ଣ୍ଣ, କେତେ ବ୍ୟାପକ । ସେତିକି ମାତ୍ରଥିଲା ସେ ଦିନ ସଭାରେ ପ୍ରଫେସର କପୁରଙ୍କ ସଂକ୍ଷିପ୍ତ ଅଥଚ ଉଚ୍ଛ୍ୱସିତ ଭାବ ପ୍ରବଣ ଭାଷଣର ସାରକଥା । କବି ପଦ୍ମଚରଣ କହିଲା ପରି "କ୍ଷୁଦ୍ର ମଞ୍ଜି ଉପୁଜାଏ ମହାଦ୍ରୁମ ଶତ-ଶତ ।" ମୋର ପରିଚୟ ପ୍ରସଙ୍ଗରେ ପ୍ରଫେସର କପୁର କହିଥିଲେ "The first academician of the University" କାରଣ ତାର ଦଶ ଦିନ ପୂର୍ବରୁ ତା ୨୨ । ୧୦ । ୧୯୬୮ ଦିନର ନିଯୁକ୍ତି ସଂକ୍ରାନ୍ତ ଇଣ୍ଟରଭ୍ୟୁ ବୋର୍ଡର ସୁପାରିଶ୍ ମୋତେ ସିଣ୍ଡିକେଟ୍ ପ୍ରାଧ୍ୟାପକ ନିଯୁକ୍ତି ଦେଇ ସାରିଥାଏ । ଅବଶ୍ୟ, ଆବଶ୍ୟକ କାଗଜପତ୍ର ହେବା ପରେ ମୁଁ ଜଏନ୍ କଲି ତା ୧୦।୨।୬୯ ଦିନ । ତାର ଅଳ୍ପ ଦିନ ପରେ ବିଭାଗର ଦ୍ୱିତୀୟ ଅଧ୍ୟାପକ ଯୋଗଦେଲେ ଶ୍ରୀ ବାଳକୃଷ୍ଣ ଶତପଥୀ ।

ଦ୍ୱିତୀୟ ବର୍ଷର ଆରମ୍ଭ ପୂର୍ବରୁ କୁଳପତି ପ୍ରଫେସର କପୁରଙ୍କ ଅକାଳ ଦେହାନ୍ତ ହେଲା ୧୯୬୯ ମାର୍ଚ୍ଚ ବେଳକୁ । କିଛି କାଳ ଧରି ଅସ୍ଥାୟୀ ବ୍ୟବସ୍ଥା ପରେ ଡକ୍ଟର କିଶୋର ଚନ୍ଦ୍ର ପଟ୍ଟନାୟକ ଗ୍ରହଣ କଲେ କୁଳପତି ଦାୟିତ୍ୱ । ସ୍ୱୀକାର କରିବାକୁ ହେବ ପ୍ରାଥମିକ ଉତ୍ସାହ ଟିକିଏ ହ୍ରାସପ୍ରାପ୍ତ ହେଲା । ଦ୍ୱିତୀୟ ବର୍ଷ ଆରମ୍ଭରେ ଉଭୟ ବିଭାଗ ନିମିତ୍ତ ଆବଶ୍ୟକ ହେଲା ଅଧିକ ଅଧ୍ୟାପନାକକ୍ଷ । ଧନୁପାଳୀରୁ ପ୍ରାୟ ବର୍ଷକ ପାଇଁ ଆମେ ଉଠି ଆସିଲୁ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ । ଆମର କ୍ଲାସ ହୁଏ ସକାଳେ, ସବିଯାଏ ୧୧ଟା ଯାଏ । ୧୯୭୦ ଜୁଲାଇରେ ସମ୍ବଲପୁର ବାଲିବନ୍ଧାର ପାଟଣା ମହାରାଜାଙ୍କ ଘର ନିଆହେଲା ସ୍ନାତକୋତ୍ତର ବିଭାଗ ନିମିତ୍ତ । ସେହିବର୍ଷଠାରୁ ଇଂରେଜି, ଅର୍ଥଶାସ୍ତ୍ର, ଗଣିତ ଓ ଇତିହାସ ବିଭାଗଗୁଡ଼ିକ ମଧ୍ୟ ଖୋଲିଲା । ଏହି ଘରେ କଳାବିଦ୍ୟାର ଅଧ୍ୟାପନା କାର୍ଯ୍ୟ ଚାଲିଲା ୧୯୭୨ ସେପ୍ଟେମ୍ବର ଶେଷରେ ବ୍ଲାର୍ରେ ବିଶ୍ୱବିଦ୍ୟାଳୟର ନିଜ ଘରେ କାର୍ଯ୍ୟାରମ୍ଭ ହେବା ପର୍ଯ୍ୟନ୍ତ । ପ୍ରସଙ୍ଗକ୍ରମେ ଉଲ୍ଲେଖ ଯୋଗ୍ୟ ଯେ ସମାନ୍ତରାଳ ବିକାଶ ଭାବେ ବୁର୍ଲା ଇଂଜିନିଅରିଂ ଓ ମେଡ଼ିକାଲ କଲେଜ ମାନଙ୍କର କେତୋଟି କକ୍ଷ ତଥା ପ୍ରୟୋଗଶାଳାର ସହାୟତା ଭିତ୍ତିରେ ପଦାର୍ଥବିଜ୍ଞାନ, ରସାୟନ ବିଜ୍ଞାନ ଏବଂ ଜୀବବିଜ୍ଞାନ ବିଭାଗଗୁଡ଼ିକ ମଧ୍ୟ ଆରମ୍ଭ ହୋଇଯାଇଥାଏ ।

ଉତ୍କଳ ବିଶ୍ୱବିଦ୍ୟାଳୟର ସିଲାବସ ଅନୁସରଣରେ ପ୍ରଥମଦଳ ଛାତ୍ରଙ୍କ ଅଧ୍ୟାପନା ଚାଲିଥିଲା । କିନ୍ତୁ ଆମର ନିଜ ସିଲାବସ ତିଆରି ପାଇଁ ପାଠ୍ୟସମିତିର ସ୍ୱତନ୍ତ୍ର ଅଧିବେଶନ ବସି କାର୍ଯ୍ୟାରମ୍ଭ କଲା । ଅଧ୍ୟାପକ ଶତପଥୀ ଓ ମୁଁ ଥିଲୁ ବିଭାଗୀୟ ଅଧ୍ୟାପକ । ଆମ ସହିତ ପ୍ରତ୍ୟକ୍ଷଭାବେ ସହଯୋଗ କଲେ ପାଠ୍ୟସମିତିର ସିନିଅର ସଭ୍ୟ ଅଧ୍ୟାପକ ଚିନ୍ତାମଣି ବେହେରା । ୧୯୬୯-୭୦ ଶିକ୍ଷାବର୍ଷରୁ ନୂତନ ସିଲାବସ୍ କାର୍ଯ୍ୟକାରୀ ହେଲା ।

ବିଶ୍ୱବିଦ୍ୟାଳୟର ଏହି ଆଦ୍ୟପର୍ବ ସବୁଦିଗରୁ କର୍ମମୁଖର ହୋଇ ଉଠିଥିଲା । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ବିଶ୍ୱବିଦ୍ୟାଳୟର ଶିକ୍ଷାଦାନୀ ବିଭାଗ ଗୁଡ଼ିକ ପାଇଁ ଘର, ଲାଇବ୍ରେରୀ, ଲାବୋରେଟରୀ ପ୍ରଭୃତି ନିମିତ୍ତ ଅନୁଦାନ ଦେବା ସଙ୍ଗେ ସଙ୍ଗେ ପ୍ରତି କଳା ବିଭାଗ ଲାଗି ପ୍ରଥମେ ସୁପାରିଶ୍ କଲେ ଚାରିଜଣ ଲେଖାଏଁ ଅଧ୍ୟାପକ -ଜଣେ ପ୍ରଫେସର ଓ ମୁଖ୍ୟ, ଜଣେ ରିଡର ଓ ଦୁଇଜଣ ଲେକ୍‌ଚରର୍ । ତାହା ସହିତ ରାଜ୍ୟ ସରକାରଙ୍କ ଅନୁଦାନକୁ ମିଶାଇ ଯାହା ଅର୍ଥ ସଂଗୃହୀତ ହେଲା ତହିଁରେ ଯଥାସମ୍ଭବ ଗୃହ-ନିର୍ମାଣ ବ୍ୟବସ୍ଥା ଆଗେଇଲା । ଆମର କିଛୁ ମୁଖ୍ୟ

ସମସ୍ୟା ହେଲା ଲାଇବ୍ରେରୀ ନେଇ । ପରିଶେଷରେ ମୁଁ ନିଜେ ଯାଇ ଆମର ଅତ୍ୟାବଶ୍ୟକ ପାଠ୍ୟ ପୁସ୍ତକ ତଥା ସମାଲୋଚନା ଗ୍ରନ୍ଥ ଗୁଡ଼ିଏ କଟକରୁ ନେଇ ଆସିଲି । ଦେବଗଡ ସଚ୍ଚିଦାନନ୍ଦ ଲାଇବ୍ରେରୀର ଗ୍ରନ୍ଥ ସମ୍ଭାର ଏବଂ ପୁରୁଣା ପତ୍ରିକାଗୁଡ଼ିକର ଗବେଷଣା ସହାୟକ ମୂଲ୍ୟ ଦୃଷ୍ଟିରୁ କୁଳପତି ପଟ୍ଟନାୟକଙ୍କ ସହ ଦେବଗଡ ଯାଇ ସେଠାରୁ ଏକ ସଂପୂର୍ଣ୍ଣ ତାଲିକା ସଂଗ୍ରହ କରିବା ପରେ ବିଶ୍ୱବିଦ୍ୟାଳୟକୁ ସେ ସବୁ ହସ୍ତାନ୍ତରିତ କରିବା ପାଇଁ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କ ସହିତ ଲେଖାଲେଖି ବ୍ୟବସ୍ଥା ମଧ୍ୟ କରାଇଥିଲି । କିନ୍ତୁ ସେତିକିରେ ତାହା ରହିଗଲା ।

ୟୁଜିସି ସୁପାରିଶ୍ ଅନୁ ସରଣରେ ୧୯୭୧ ଆରମ୍ଭରେ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ରୂପେ ନିଯୁକ୍ତ ହେଲେ ଡକ୍ଟର୍ ଗୋପାଳଚନ୍ଦ୍ର ମିଶ୍ର ଏବଂ ଲେକ୍‌ଚରର ରୂପେ ନିଯୁକ୍ତ ହେଲେ ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ । ଚରିଜଣ ଅଧ୍ୟାପକଙ୍କ ସହିତ ଅଫିସ ସହଯୋଗୀ ରୂପେ ଥାଆନ୍ତି ଶ୍ରୀ ଭକ୍ତପ୍ରସାଦ ପଣ୍ଡା ଓ ଶ୍ରୀ ଫକୀର ମନିରା । ( ପରେ କାମ୍ପସ୍‌ରେ ଭକ୍ତ ପ୍ରସାଦଙ୍କ ସ୍ଥାନରେ ଆସିଲେ ଚକ୍ରାନନ ମାହାଣା । ଫକୀର ମଧ୍ୟ ଚାଲିଗଲେ ଅନ୍ୟ ବିଭାଗକୁ ।) ଦୁଇଟି ଶ୍ରେଣୀ କକ୍ଷ ଓ ଗୋଟିଏ ସାନ କୋଠରୀ ଅଫିସ ଓ କମନ୍‌ରୁମ୍ ପାଇଁ । ଏହିପରି କ୍ଷୁଦ୍ର ଆୟୋଜନ ମଧ୍ୟରେ ଆମ ବିଭାଗର କାର୍ଯ୍ୟ ଚାଲିଥାଏ ଏକ ନିରାଡ଼ମ୍ବର ପରିବେଶରେ ସେହି ପାଟନା ହାଉସରେ । ଆମ ସହଯୋଗୀ ବିଭାଗ ଗୁଡ଼ିକ ମଧ୍ୟ ଅନୁରୂପ ବ୍ୟବସ୍ଥା ମଧ୍ୟରେ ଚାଲିଥାନ୍ତି । ବିଶ୍ୱବିଦ୍ୟାଳୟ ମଧ୍ୟ ଚାଲିଥାଏ ବୁଢାରଜା ପାହାଡର ଉତ୍ତର ନାସି ପାଖରେ ଅବସ୍ଥିତ ଏକ ସରକାରୀ ଘରେ, ତହିରୁ ଗୋଟାଏ କୋଠରୀରେ ଆରମ୍ଭ ହୋଇଥିଲା ଲାଇବ୍ରେରୀ । ପରେ ତାହା ଉଠି ଆସିଲା ବୁଢାରଜା ପ୍ରଫେସର କଲୋନୀ ନିକଟସ୍ଥ ଏକ ଭଡା ଘରକୁ । କହିବା ବାହୁଲ୍ୟ ଏ ଭଳି ବିକ୍ଷିପ୍ତ ଓ ସଂକୀର୍ଣ୍ଣ ବ୍ୟବସ୍ଥାରେ ସବୁ ଚାଲିଥାଏ ସିନା, କେନ୍ଦ୍ରୀଭୂତ ତଥା ସୁଶୃଙ୍ଖଳ ସଂଗଠିତ କାର୍ଯ୍ୟକ୍ରମ ନିମିତ୍ତ ଏ ଅବସ୍ଥା ଅନୁକୂଳ ନ ଥିଲା । ତେଣୁ ନିଷ୍ଠା ଓ ଆନ୍ତରିକତା ସହ ଅଧ୍ୟାପନା ଏବଂ ସାପ୍ତାହିକ ଆଲୋଚନା ସଭା ହିଁ ହୋଇଥାଏ ବିଭାଗର ମୁଖ୍ୟ କାର୍ଯ୍ୟକ୍ରମ । ଟ୍ରେନିଂ କଲେଜରେ ଥିବା ବେଳେ ଏକ ସପ୍ତାହବ୍ୟାପୀ ଆଲୋଚନା ସଭାର ବ୍ୟବସ୍ଥା ହୋଇଥିଲା । ଥରେ ଡକ୍ଟର ହରେକୃଷ୍ଣ ମହାତାବ ଅତିଥି ହୋଇ ଆସିଥିଲେ ବିଭାଗର ବାର୍ଷିକ ଉତ୍ସବକୁ । ଆର୍ଥିକ ସ୍ୱଚ୍ଛଳତା ନ ଥିବା ଫଳରେ ଆମେ ଅଧିକ ସଂକୁଚିତ ହୋଇପଡ଼ିବା ମଧ୍ୟ ଅସ୍ୱାଭାବିକ ନ ଥିଲା ।

୧୯୭୧ ଜୁଲାଇ ମାସରେ ନୂତନ କୁଳପତି ଆସିଲେ ପ୍ରଫେସର ଭୁବନେଶ୍ୱର ବେହେରା । ଜଏନ୍ କରିବାର ସାତଦିନ ମଧ୍ୟରେ ସେ ବର୍ଷାର ଆସାରପାତ ମଧ୍ୟରେ ପରିଦର୍ଶନ ପାଇଁ ଆସିଥିଲେ ପାଟଣା ହାଉସ୍‌କୁ । ସିଣ୍ଡିକେଟ୍ ସଭ୍ୟ ଭାବେ ଶିକ୍ଷାଦାନୀ ବିଭାଗର ମୋଟାମୋଟି ଅବସ୍ଥା ବିଷୟରେ ସେ ପୂର୍ବରୁ ଅବଗତ ଥିଲେ । ସେହିଦିନ ତାଙ୍କ ମନର ପ୍ରଥମ ଅଭିଳାଷ ରୂପେ ସେ ପ୍ରକାଶ କରିଥିଲେ ବିଶ୍ୱବିଦ୍ୟାଳୟରୁ ଏକ ସାହିତ୍ୟ ପତ୍ରିକା ପ୍ରକାଶନ ବିଷୟ । ବୁଢାରଜା ପାହାଡ଼ତଳୁ ପ୍ରଫେସର କଲୋନୀ ନିକଟରୁ ତଥା ପାଟନାହାଉସରୁ କିପରି ଉଠିବ ଏ ବିଶ୍ୱବିଦ୍ୟାଳୟ ନିଜ ସ୍ଥାନକୁ ଏହା ଥିଲା ତାଙ୍କର ମୁଖ୍ୟ ଚିନ୍ତା । ନିର୍ମାଣ ବିଭାଗର ଇଂଜିନିଅର ଭାବେ ବୁର୍ଲାରେ ଯେଉଁ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥାଏ ତା ସହିତ ବି ସେ ମୂଳରୁ ହିଁ ଥିଲେ ସଂପୃକ୍ତ । ଏବେ କୁଳପତି ଭାବେ ତାକୁ ଦ୍ରୁତଗତିରେ ଆଗେଇ ନେବାକୁ ସେ ଉତ୍ସାହରେ ଲାଗି ପଡିଲେ । ପୁଣି

ଯୋଗ ଦେବାର ଅଳ୍ପ ସମୟ ପରେ ସେ ଆରମ୍ଭ କଲେ ପରୀକ୍ଷା ପଦ୍ଧତିର ପରିବର୍ତ୍ତନ ନିମିତ୍ତ କଳ୍ପନା, ଜଳ୍ପନା, ଯାହା ଫଳରେ ଏକ ନୂଆ ସେମେଷ୍ଟର ପାଠ୍ୟକ୍ରମ ନେଇ ଅଧ୍ୟାପନା ଆରମ୍ଭ ହେଲା ୧୯୭୨-୭୩ ବର୍ଷରୁ ।

କିନ୍ତୁ ସାହିତ୍ୟ ପତ୍ରିକା ପ୍ରକାଶନ ନିମିତ୍ତ ପ୍ରସ୍ତୁତି ଅବିଳମ୍ବେ ଆରମ୍ଭ ହେଲା ସ୍ୱୟଂ କୁଳପତିଙ୍କ ନେତୃତ୍ୱରେ । ଏହାକୁ ବିଶ୍ୱବିଦ୍ୟାଳୟର ଏକ ସାହିତ୍ୟିକ କାର୍ଯ୍ୟକ୍ରମ ରୂପେ ସେ ପରିକଳ୍ପନା କରିଥିଲେ । ଆଞ୍ଚଳିକ ଭାଷା ଓ ସାହିତ୍ୟର ପ୍ରଚାର, ବିକାଶ ତଥା ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କ ମଧ୍ୟରେ ଲେଖକ ସୃଷ୍ଟି ଥିଲା ଏହାର ଲକ୍ଷ୍ୟ; ଫଳତଃ ଗଳ୍ପ ଓ କବିତା ପ୍ରଭୃତି ସୃଜନଶୀଳ ରଚନା କେବଳ ଛାତ୍ରମାନଙ୍କ ଠାରୁ ଗୃହୀତ ହେଉଥିଲା । ଗବେଷଣାତ୍ମକ ପ୍ରବନ୍ଧ ନିମିତ୍ତ ପତ୍ରିକାର ଶହେ ପୃଷ୍ଠାରୁ ୨୪ ପୃଷ୍ଠା ସ୍ଥାନ ନିର୍ଦ୍ଦିଷ୍ଟ ଥିଲା, ସେହିପରି ସମ୍ବଲପୁରୀ ଭାଷା, ସାହିତ୍ୟ, ସଂସ୍କୃତି, ଜନ ଓ ସ୍ଥାନର ପରିଚୟ ସଂକଳନ ତଥା ଗବେଷଣା ନିମିତ୍ତ ନିର୍ଦ୍ଦିଷ୍ଟ ଥିଲା ଦଶପୃଷ୍ଠା ମୁଖ୍ୟ ସଂପାଦକ ହେଲେ ସ୍ୱୟଂ କୁଳପତି ପ୍ରଫେସର ବେହେରା । ସଂପାଦନାରେ ସହ-ଯୋଗ କଲେ ଅଧ୍ୟାପକ ମଣ୍ଡଳୀ, ବିଶେଷତଃ ଓଡ଼ିଆ ବିଭାଗର । ସଂପୂର୍ଣ୍ଣ ବ୍ୟୟ ବହନ କଲା ବିଶ୍ୱବିଦ୍ୟାଳୟ । ବିଶ୍ୱବିଦ୍ୟାଳୟର ଅଧ୍ୟାପନା କାର୍ଯ୍ୟକ୍ରମରେ ରହିଛି ଯେଉଁ ସପ୍ତବିଦ୍ୟା କଳା, ସାହିତ୍ୟ, ବାଣିଜ୍ୟ, ଇଂଜିନିଅରି, ମେଡ଼କାଲ, ଶିକ୍ଷା ଓ ଆଇନ୍ ତାହାରି ପ୍ରତୀକ ରୂପେ ଏ ପତ୍ରିକାର ନାମ ରଖାଯାଇଥିଲା 'ସପ୍ତର୍ଷି' । ଉଲ୍ଲେଖ ଯୋଗ୍ୟ ଯେ ଗଙ୍ଗାଧର ମେହେର କଲେଜର ଜଣେ ତତ୍କାଳୀନ ଛାତ୍ରଙ୍କ ଠାରୁ ମିଳିଥିଲା ଏହି ସପ୍ତର୍ଷି ନାମର **ଅର୍ଥପୂର୍ଣ୍ଣ** ପ୍ରସ୍ତାବ ।

ସପ୍ତର୍ଷି ପ୍ରଥମେ ପ୍ରକାଶିତ ହେଲା ୧୯୭୨ ଜାନୁୟାରୀ ପହିଲାରେ-ବିଶ୍ୱବିଦ୍ୟାଳୟର ଜନ୍ମ-ଦିବସରେ । ସେ ଦିନଠାରୁ ଆସି ତେଇଶ ବର୍ଷ ପୂର୍ଣ୍ଣ ହେବା ବେଳ ହେଲା । ଏହାର ପରିଚାଳନା, ସଂଗଠକ, କାର୍ଯ୍ୟଧାରା ତଥା ଏଥିରେ ପ୍ରକାଶିତ ରଚନାବଳୀ ସଂପର୍କରେ ସେ ପ୍ରାଥମିକ ନିୟମା-ବଳୀରେ ଅନେକ ପରିବର୍ତ୍ତନ ହୋଇଛି । କର୍ତ୍ତୃପକ୍ଷ ଆସିଛନ୍ତି, ଯାଇଛନ୍ତି—ସମସ୍ତଙ୍କ ସମାନ ଶୁଭଦୃଷ୍ଟି ମିଳିନାହିଁ ସପ୍ତର୍ଷିକୁ । କିନ୍ତୁ ଦୁଇଟି ସତ୍ୟ ରହିଛି ଅପରିବର୍ତ୍ତନୀୟ ହୋଇ — କୁଳପତି ରହିଛନ୍ତି ଏହାର ମୁଖ୍ୟ ସଂପାଦକ ଏବଂ ଏହା ବିଶ୍ୱବିଦ୍ୟା-ଳୟର ଏକ ନିଜସ୍ୱ ସାହିତ୍ୟିକ କାର୍ଯ୍ୟକ୍ରମ । ଏ ଦୃଷ୍ଟାନ୍ତ ଓଡ଼ଶାରେ ତ ଆଉ ନାହିଁ, ଦେଶରେ ମଧ୍ୟ ସୁଲଭ ନୁହେ । କହିବା ବାହୁଲ୍ୟ, ପ୍ରଫେ-ସର ଭୁବନେଶ୍ୱର ବେହେରା ଏହାକୁ ସାମୂହିକ ଭାବେ ବିଶ୍ୱବିଦ୍ୟାଳୟ ରଙ୍ଗ ଦେବା ଲାଗି ଯେତେ ବ୍ୟବସ୍ଥା କରିଥିଲେ ହେଁ ଏହାର ପ୍ରମୁଖ ଦାୟିତ୍ୱ ଥିଲା ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର । ପ୍ରାଥମିକ ସ୍ତରରେ ଏହାର ପରିଚାଳନାର ସଫଳତା ନିମିତ୍ତ ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ରଙ୍କ ଶ୍ରମ ଓ ଉଦ୍ୟମ ଅବଶ୍ୟ ସ୍ମରଣୀୟ । ସହଯୋଗୀ ଅଧ୍ୟାପକ ଏବଂ କର୍ମୀ ଥିଲି ମୁଁ; ଆହୁରିଥିଲେ ଇଂରେଜି ବିଭାଗର ତତ୍କାଳୀନ ରିଡର ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି । ପରିଚାଳନା ସହିତ ପ୍ରାୟ ମୂଳରୁ ସଂପୃକ୍ତ ଥିଲେ ଲାଇବ୍ରେରିଆନ୍ ବିଷ୍ଣୁପ୍ରସାଦ ମହାପାତ୍ର ଓ ତାଙ୍କ ସହକର୍ମୀ ପ୍ରହ୍ଲାଦ ପଣ୍ଡା ।

୧୯୭୨ ଏପ୍ରିଲ ଶେଷ ବେଳକୁ ଅଧ୍ୟାପକ ଆଚାର୍ଯ୍ୟ ବିଶ୍ୱବିଦ୍ୟାଳୟ ଛାଡ଼ ଫେରିଗଲେ ତାଙ୍କ ମୂଳ ସରକାରୀ ପଦବୀକୁ । ତା ପରେ ଆବଶ୍ୟକ ନିଯୁକ୍ତି ପ୍ରକିୟା ସରିବା ପରେ ୧୯୭୨ ଶେଷବେଳକୁ (୧୯୭୩ ?) ବିଭାଗରେ ଯୋଗଦେଲେ ଅଧ୍ୟାପକ ବୈରାଗୀ ଚରଣ ଜେନା । ୧୯୭୨ର ଅପର ସ୍ମରଣୀୟ ଘଟଣା ଅକ୍ଟୋବର ପହିଲାଦିନ ବିଶ୍ୱ-ବିଦ୍ୟାଳୟ ପରିସରରେ ଆମ ବିଭାଗ ପାଇଁ ନିର୍ଦ୍ଦିଷ୍ଟ ଘରେ ବିଭାଗର କାର୍ଯ୍ୟାରମ୍ଭ । ପୂର୍ବାନୁଭୂତ

ସଂକୀର୍ଣ୍ଣତା ତୁଳନାରେ ଆମର ପରିବେଶ ଖୁବ୍ ପ୍ରଶସ୍ତ ହେଲା ନିଶ୍ଚୟ; କିନ୍ତୁ ଅବିଳମ୍ବେ ଆମେ ଅନୁଭବ କରିଥିଲୁଁ ଯେ ଆଉ ଟିକିଏ ବଡ ହୋଇଥିଲେ ଭଲ ହୋଇଥାନ୍ତା । କାରଣ ଅଙ୍ଗୀକୃତ ଛାତ୍ର ସଂଖ୍ୟା ବଢ଼ି ବଢ଼ି ଚାଲିଲା ପଚାଶ ପର୍ଯ୍ୟନ୍ତ ।

ପ୍ରାୟ ଏହି ସମୟ ହେବ, ଥରେ ଭୁବନେଶ୍ୱରରେ ସ୍ୱର୍ଗତ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ଘରେ ତାଙ୍କ ବିରୁଦ୍ଧରେ ଏକ ବିନୀତ ଅଭିଯୋଗ ବାଢ଼ିଥିଲି ଯେ ସେ ସଂବଲପୁର ଜିଲାର ମୂଳ ଅଧିବାସୀ ହେଲେ ହେଁ ସଂବଲପୁରୀ ଭାଷାର ବୈଶିଷ୍ଟ୍ୟ ନିରୂପଣ ଦିଗରେ ତାଙ୍କ ଭାଷାତତ୍ତ୍ୱ-ଜ୍ଞାନର କୌଣସି ଉପଯୋଗ କଲେ ନାହିଁ । ପ୍ରଫେସର ପ୍ରଧାନ ପାଲଟା ଅଭିଯୋଗ କଲେ ଯେ ତାଙ୍କୁ ସେ ପର୍ଯ୍ୟନ୍ତ କେହି ଏ ବିଷୟ କହିନାହାନ୍ତି । ମୁଁ ଏ ବିବାଦ ମଧ୍ୟକୁ ନ ଯାଇ ତାଙ୍କୁ ପ୍ରବର୍ତ୍ତାଇ ବାର ଯତ୍ନ କଲି । କ୍ୟାମ୍ପସ୍‌ରେ ଖଣ୍ଡିଏ ରହିବା ଘର ଓ କାମ କରିବାର ଉପକରଣ ସହିତ ଗବେଷକ ହେଲେ ସେ କାର୍ଯ୍ୟ କରିବେ ବୋଲି ସମ୍ମତ ହେଲେ । ସେତେବେଳେ ସେ ୟୁଜିସି ସହାୟତାରେ ରେଭେନ୍‌ସା କଲେଜରେ କୌଣସି ଏକ ପ୍ରକଳ୍ପର ଭାର ନେଇଥାନ୍ତି । ୟୁଜିସିରୁ ଅନୁମତି ନେଇ ସେ ତାଙ୍କ କାର୍ଯ୍ୟକ୍ଷେତ୍ର ବୁର୍ଲାକୁ ସ୍ଥାନାନ୍ତରିତ କରଇବେ କହିଲେ । ଉପାହରେ ମୁଁ ପ୍ରଫେସର ବେହେରାଙ୍କୁ ଜଣାଇବାରେ ସେ ଆନନ୍ଦରେ ସମ୍ମତି ଦେଇ ଘର ପ୍ରଭୃତି ଯୋଗାଇବାର ପ୍ରତିଶ୍ରୁତି ସହ ପ୍ରଫେସର ପ୍ରଧାନଙ୍କୁ ଆସିବାକୁ ଅନୁରୋଧ କଲେ । ପରବର୍ତ୍ତୀ ସ୍ତରରେ ପ୍ରଫେସର ପ୍ରଧାନ ଯେଉଁ ପାରିଶ୍ରମିକ ଚାହିଁଲେ ତାହା ଯୋଗାଡ କରା ଯାଇ ନ ପାରିବାରୁ ସେ ପ୍ରସ୍ତାବ ସେତିକିରେ ରହିଲା ।

ଆହୁରି ଏକ ପ୍ରସ୍ତାବରେ ମୁଁ ସଂବଲପୁର-ଭାଷୀ ଅଞ୍ଚଳରେ ଏକ ଭାଷା ସର୍ବେକ୍ଷଣର ସଂପୂର୍ଣ୍ଣ ପ୍ରସ୍ତାବ ମଧ୍ୟ ଦେଇଥିଲି । ଏ ବିଶ୍ୱବିଦ୍ୟାଳୟ ଅଞ୍ଚଳରେ ବଛା ବଛା ପଚାଶଟି ଗ୍ରାମୀଣ କେନ୍ଦ୍ରରେ ଲୋକକଥା ଓ ଲୋକଗୀତ ସବୁସ୍ୱାଭାବିକ ପରିବେଶରେ ଟେପ୍‌ରେକର୍ଡ ସାହାଯ୍ୟରେ ସଂଗ୍ରହ କରିବା ହେବ ପ୍ରଥମ ସ୍ତରର କାର୍ଯ୍ୟ । ଦ୍ୱିତୀୟ ସ୍ତରରେ ଏ ଗୁଡ଼ିକୁ ଲେଖି ନେଇ ତାର ଆନ୍ତର୍ଜାତିକ ଉଚ୍ଚାରଣ ଲିପି ( I. P. A. ) ରେ ଅନୁଲିପୀ କରଣ କରି ଅଧ୍ୟୟନର ପଥ ସୁଗମ କରିବାକୁ ହେବ । ସେ ପ୍ରସ୍ତାବର ଅପର ଦିଗ ଥିଲା ସଂବଲପୁରୀ ଲୋକ ସାହିତ୍ୟର ବ୍ୟାପକ ସଂଗ୍ରହ ଓ ସଂକଳନ ପରେ ପ୍ରକାଶନ । ଆଲୋଚନା ବେଳେ କୁଳପତି ବେହେରା ଏ ଅଞ୍ଚଳରେ ରଚିତ ଓ ଅନାବିଷ୍କୃତ ଓଡ଼ିଆ ରଚନାବଳୀ ଓ ପୋଥି ସଂଗ୍ରହର ବିଷୟ ମଧ୍ୟ ଏହାର ଅନ୍ତର୍ଭୁକ୍ତ କଲେ । କୁଳପତି ମହାଶୟ ସ୍ୱୟଂ ନେଇଗଲେ ନେତୃତ୍ୱ । ଓଡ଼ିଆ ଭାଷା ସାହିତ୍ୟ ବିକାଶ ସମିତି ଗଢ଼ିବାର ପ୍ରସ୍ତାବଟିଏ ଉପସ୍ଥାପନ କଲେ,— ତହିଁରେ କାର୍ଯ୍ୟକ୍ରମ ଦୃଷ୍ଟିରୁ ଭାଷା ସର୍ବେକ୍ଷଣ ଛଡ଼ା ବାକି ବିଷୟ ରହିଲା; ଆହୁରି ରହିଲା 'ସପ୍ତର୍ଷିର' ପ୍ରକାଶନ ଓ ପରିଚାଳନା; ଅପର କୌଣସି ପ୍ରକାଶକଙ୍କୁ ସମ୍ବଳ ସୀମା ମଧ୍ୟରେ ପ୍ରକାଶନ ସହାୟତା ଯୋଗାଇବା ଇତ୍ୟାଦି ମଧ୍ୟ ରହିଲା । ଏହି ଯୋଜନାରେ 'ସପ୍ତର୍ଷି' ତ ରହିଥିଲା; ଶଶୀଭୂଷଣ ମିଶ୍ରଙ୍କ 'ଗୋଛର-କାବ୍ୟ'ର ପ୍ରକାଶନ ନିମିତ୍ତ ପାଞ୍ଚଶହ ଟଙ୍କା ସହାଯ୍ୟ ମଧ୍ୟ ଦିଆଯାଇଥିଲା । ସଂବଲପୁରୀ ଭାଷାରେ ରଚିତ ଲୋକରଚନା ବଳୀର ସଂଗ୍ରହ ସଂକଳନ ନିମିତ୍ତ ୟୁଜିସି ସହାୟତା ମିଳିଥିଲା ଏବଂ କୁଳପତି ପ୍ରଫେସର ଭୁବନେଶ୍ୱର ବେହେରାଙ୍କ ଅବସର ପ୍ରାକ୍‌କାଳରେ ୧୯୭୬ ଅକ୍ଟୋବର ମାସରେ ବରପାଲୀ ନିକଟସ୍ଥ କୁମ୍ଭାରୀ

ଗ୍ରାମରେ ସଂବଲପୁରୀ ଲୋକ ନୃତ୍ୟ ଗୀତର ମନୋରମ ଆୟୋଜନ ମଧ୍ୟରେ ଏହି ଯୋଜନାର ଶୁଭାରମ୍ଭ ହୋଇଥିଲା । ଡାଇରେକ୍ଟର ଥିଲେ ପ୍ରଫେସର ଗୋପାଳ ଚନ୍ଦ୍ର ମିଶ୍ର । ବିଭାଗୀୟ ଗବେଷକ ଶ୍ରୀ ନିମାଇଁ ଚରଣ ପଣ୍ଡା ଓ ଶ୍ରୀ ଶ୍ୟାମସୁନ୍ଦର ଧର ଏହି ଯୋଜନା ପ୍ରସଙ୍ଗରେ ନିଯୁକ୍ତ ହୋଇ କାର୍ଯ୍ୟରେ ଯୋଗଦେଇଥିଲେ । ଶ୍ରୀ ପଣ୍ଡା ଏହି ସଂଗ୍ରହର ଉପଯୋଗରେ ତାଙ୍କ ପି ଏଚ.ଡ. କରିଥିଲେ । କିନ୍ତୁ ସମଗ୍ର ସଂଗ୍ରହ ସଂକଳନ ସଂପାଦିତ ତଥା ପ୍ରକାଶ ହୋଇଥିବା ସ୍ମରଣକୁ ଆସୁନାହିଁ ।

ସଂପ୍ରସାରଣ ନିମିତ୍ତ ୟୁଜିସିର ପରବର୍ତ୍ତୀ ମଂଜୁରି କ୍ରମେ ଆଉ ଜଣେ ରିଡର ଓ ଆଉ ଜଣେ ଲେକ୍‌ଚରର ରହିବେ ସ୍ଥିର ହେଲା । ଲେକ୍‌ଚରର୍ ନିଯୁକ୍ତ ହେଲେ ଅଧ୍ୟାପକ ଆଦିକନ୍ଦ ସାହୁ । ଅଧ୍ୟାପକ ଶତପଥୀ ତଥା ଅଧ୍ୟାପକ ଜେନା - ଉଭୟେ ଏ ସମୟକୁ ପି. ଏଚ୍. ଡ. କରିସାରି ଯୋଗ୍ୟତା ଅର୍ଜନ କରିଥିଲେ । ନିଯୁକ୍ତି ସଂକ୍ରାନ୍ତ ମୌଖିକ ପରୀକ୍ଷାରେ ଡକ୍ଟର ବୈରାଗୀ ଚରଣ ଜେନା ଯୋଗ୍ୟ ବିବେଚିତ ହୋଇ ନିଯୁକ୍ତ ହେଲେ । ପ୍ରତିବାଦ କଲେ ଡକ୍ଟର ବାଳକୃଷ୍ଣ ଶତପଥୀ ଏବଂ ଶେଷରେ ବିଭାଗ ଛାଡ଼ି ଚାଲିଗଲେ ।

( ? ) ୧୯୭୭ରେ ଆରମ୍ଭ ହେଲା ଏମ୍. ଫିଲ୍ କାର୍ଯ୍ୟକ୍ରମ । ପ୍ରାୟ ଏହି ସମୟକୁ ପ୍ରଫେସର ଗୋପାଳ ଚନ୍ଦ୍ର ମିଶ୍ରଙ୍କ ଚେଷ୍ଟାରେ ପ୍ରକାଶିତ ହେଲା ବିଭାଗର ମୁଖପତ୍ର - ସାହିତ୍ୟ ପତ୍ରିକା 'ଶତଭିଷା' । ପ୍ରଫେସର ମିଶ୍ରଙ୍କ ସ୍ୱକୀୟ ପ୍ରକାଶନ — 'ବସୁନ୍ଧରା' ସାହିତ୍ୟ ପତ୍ର ମଧ୍ୟ ଏହା ପରେ ଆତ୍ମପ୍ରକାଶ କରିଥିଲା । ବିଭାଗର ରୁଟିନ୍ କାର୍ଯ୍ୟକ୍ରମ ଅଧ୍ୟାପନା ସହିତ ଆଲୋଚନା ସଭ ଏବଂ ଅନ୍ୟାନ୍ୟ ସାହିତ୍ୟିକ ଉତ୍ସବ ଚାଲିଥାଏ ।

ୟୁଜିସିର ଭିଜିଟିଂ ପ୍ରଫେସର ନିଯୁକ୍ତି ବ୍ୟବସ୍ଥାର ସୁଯୋଗରେ ଆମ ବିଭାଗ ଭାଷାତତ୍ତ୍ୱର ଭିଜିଟିଂ ପ୍ରଫେସର ରୂପେ ପାଇଥିଲା ଡକ୍ଟର କୁଂଦବିହାରୀ ତ୍ରିପାଠୀଙ୍କୁ ଏବଂ ଲୋକ ସାହିତ୍ୟ ଆଲୋଚନା ସଂକ୍ରାନ୍ତରେ ଆସିଥିଲେ ସ୍ୱନାମ ଧନ୍ୟ ପ୍ରଫେସର ଆଶୁତୋଷ ଭଟ୍ଟାଚାର୍ଯ୍ୟ । ସୁରଦାସ ଜୟନ୍ତୀ ଏକ ସର୍ବ ଭାରତୀୟ ସ୍ତରର ଆଲୋଚନାଚକ୍ର ଏହାର ଅନୁଷ୍ଠାନ ମଧ୍ୟ ୟୁଜିସି ଅନୁଦାନର ଫଳ । ବିଭାଗୀୟ ମୁଖ୍ୟଙ୍କ ଉଦ୍ୟମ ଯୋଗୁଁ ଏ ସବୁ ସମ୍ଭବ ହୋଇଥିଲା । ଆମେ ଅଧ୍ୟାପକବର୍ଗ ମୁଖ୍ୟ ଅଧ୍ୟାପକଙ୍କ ସହ ସହଯୋଗ କରୁଥିଲୁଁ, ଆମ ମଧ୍ୟରୁ ଅନେକେ ପି.ଏଚ୍.ଡ. କଲେ; ପ୍ରାୟ ସମସ୍ତେ ଗବେଷଣାତ୍ମକ ରଚନା ଦିଗରେ ଆତ୍ମ-ନିୟୋଗ କରୁଥିଲୁଁ । ଆନନ୍ଦ ଲାଗେ ଯେ ୧୯୭୪ -୮୦ ମଧରେ ବିଭାଗୀୟ ଅଧ୍ୟାପକମାନଙ୍କ ନିଜ ଉଦ୍ୟମରେ କେତେକ ମୂଲ୍ୟବାନ୍ ସମାଲୋଚନା ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ବିଭାଗୀୟ ନେତୃତ୍ୱରେ ଓଡ଼ିଆ ଅଧ୍ୟାପକଙ୍କ ସଂହତି ତଥା ଭାବବିନିମୟ ନିମିତ୍ତ ଆୟୋଜିତ ହୋଇଥିଲା ପ୍ରଥମ ନିଖିଳୋ-ତ୍କଳ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ।

୧୯୮୦ ମାର୍ଚ୍ଚ ତା ୩ ଦିନ ମୋତେ ଷାଠିଏ ବର୍ଷ ପୂରିଗଲା । ସ୍ୱର୍ଗତ ପ୍ରଫେସର କପୂରଙ୍କ କଥାରେ ମୁଁ ଅଧ୍ୟାପକମାନଙ୍କ ମଧ୍ୟରେ କେବଳ ପ୍ରଥମ ନ ଥିଲି, ଥିଲି ମଧ୍ୟ ବୟୋ-ଜ୍ୟେଷ୍ଠ । ତେଣୁ ନିୟମାନୁଯାୟୀ ମୋର ଅବସର ଦିନ ନିରୂପିତ ଥିଲା ୧୯୮୦ ମାର୍ଚ୍ଚ ୩୧ ତାରିଖ । କିନ୍ତୁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଇଚ୍ଛାରେ ମୋତେ ଛଅମାସ ଅଧିକ କାର୍ଯ୍ୟ କରିବାର ସୁଯୋଗ ମିଳିଲା । ଶେଷରେ ସେହି ୧୯୮୦ ଅକ୍ଟୋବର ୧୩ ତାରିଖ ଦିନ ମୁଁ ଅବସର ନେଲି । ମୋତେ ବିଦାୟ ଦେବାର ପ୍ରସ୍ତାବ ନେଇ ଯେଉଁ ଛାତ୍ର-ମାନେ ମୋ ପାଖକୁ ଆସିଥିଲେ ତାଙ୍କୁ କହିଥିଲି,

"ଦିନେ ପ୍ରଥମେ ଏ ବିଭାଗର ସ୍ୱପ୍ନକୁ ସାକାର କରିବାର ଆଦ୍ୟ ଦାୟିତ୍ୱ ମୋତେ ମିଳିଥିଲା । ସେ ଏପରି ଏକ ସଂବନ୍ଧ ବା ଆକର୍ଷଣ ଯାହା କେବେ ତୁଟିବ ନାହିଁ । ଏକ ଲୋକ ଦେଖାଣିଆ ଅନୁଷ୍ଠାନ ମଧ୍ୟରେ ମୋର ବହିଷ୍କାର ଉତ୍ସବ ନ କରି ମୋତେ ତୁମ ମଧ୍ୟରେ ରହିଥିବା ଚେତନାରୁ ଯେଉଁ ଆନନ୍ଦ ମିଳିବ, ସେଥିରୁ ବଂଚିତ କରି କି ଫଳ ପାଇବ ?"

ପିଲାଏ ଫେରିଗଲେ । ମୋ ଫେଆର୍ୱେଲ ଆଉ ହେଲା ନାହିଁ ।

ବିଭାଗକୁ ମାତ୍ର ତେର ବର୍ଷ ବେଳେ ମୁଁ ଦୂରେଇ ଗଲି । ଏ ମଧ୍ୟରେ ଆହୁରି ବାର ବର୍ଷ ବିତିଯାଇଛି । ଏ ସମୟରେ ନିରନ୍ତର ଚାଲିଥିବା ଏକ ଉତ୍ତରୋତ୍ତର ବିକାଶର ଧାରା ଲକ୍ଷ୍ୟ କରି ଆନନ୍ଦ ପାଇଛି । ୧୯୮୪ ରେ ଅବସର ନେବା ପୂର୍ବରୁ ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ରଙ୍କ ଉଦ୍ୟମ ଫଳରେ ଏ ବିଭାଗକୁ ୟୁଜିସି ସ୍ତରରେ ଗବେଷଣା ସହାୟକ କାର୍ଯ୍ୟକ୍ରମର ବିଶେଷ ଅନୁଦାନ ମିଳିଛି ଏବଂ ତାହାର ଧାରା ଅବ୍ୟାହତ ରହିଛି । ଆଜି ଏ ବିଭାଗର ଅଧ୍ୟାପକ-ମଣ୍ଡଳୀରେ ତିନିଜଣ ପ୍ରଫେସର, ତିନିଜଣ ରିଡର୍, ଦୁଇଜଣ ଲେକ୍‌ଚରର । ଅଧିକନ୍ତୁ ଗବେଷଣା ସହାୟକ । ଏମାନଙ୍କ ନିଜ ନିଜ ଅଧ୍ୟୟନ ଓ ଗବେଷଣା ତ ଚାଲିଛି ତା ଛଡ଼ା ଛାତ୍ରଙ୍କ ମଧ୍ୟରେ ଗବେଷଣା ପାଇଁ ପ୍ରେରଣା ସୃଷ୍ଟି ଯୋଗୁଁ ବହୁ ଗବେଷକ ପି.ଏଚ୍.ଡ଼. କରିଛନ୍ତି । ଲୋକସଂସ୍କୃତି, ସମାଲୋଚନା ତତ୍ତ୍ୱ ତଥା ସାହିତ୍ୟର ଅନ୍ୟାନ୍ୟ ବିଭାଗ ସଂକ୍ରାନ୍ତରେ ଉଚ୍ଚମାନର ଆଲୋଚନାଚକ୍ର ଚାଲିଛି । 'ସପ୍ତର୍ଷି'ର ପ୍ରକାଶନ ସହିତ 'ଶତଭିଷା'ର ପ୍ରକାଶନ ଅବ୍ୟାହତ ଥିବାରୁ ଅଧ୍ୟାପକ ଛାତ୍ର ସମସ୍ତଙ୍କ ପାଇଁ ସାହିତ୍ୟ ସୃଷ୍ଟିର ପ୍ରୋତ୍ସାହନ ରହିଛି ପାଖେ ପାଖେ । ବିଭାଗର ଏ ଅଭିବୃଦ୍ଧି ନିମିତ୍ତ ଉତ୍ତର ସାଧକମାନଙ୍କୁ ସହର୍ଷ ଅଭିନନ୍ଦନ ଜଣାଉଛି ।

ରଜତଜୟନ୍ତୀର ଏ ପବିତ୍ର ଅବସରରେ ହିଁ ସୁବର୍ଣ୍ଣଜୟନ୍ତୀର ସନ୍ଧାନ ଲାଗି ସଂକଳ୍ପ ମୁହୂର୍ତ୍ତ । ଆଗାମୀ ୨୫ ବର୍ଷର କର୍ମଜୀବନ ଅବଧାରଣ କରିବାକୁ ହେବ ଦୂରସଂଚାରୀ ସୁଦୂରଦୃଷ୍ଟି ମଧ୍ୟରେ । ବ୍ୟକ୍ତିଗତ ତଥା ସାମୂହିକ ପରିକଳ୍ପନା ଓ କାର୍ଯ୍ୟକ୍ରମର ଯୋଜନାବଦ୍ଧ ଅନୁସରଣ ଦ୍ୱାରା ସଂହତସୁନ୍ଦର ଫଳ ଲାଭ ସମ୍ଭବ ହେବ । ଓଡ଼ିଆ ଭାଷା ଓ ସାହିତ୍ୟର କର୍ଷଣ ଆମର ମୂଳ ପ୍ରତିଶ୍ରୁତି । ଏ ବିଶାଳ ସାହିତ୍ୟର ସାଫଲ୍ୟ ବୈଫଲ୍ୟ ବହୁ ଦୃଷ୍ଟିରୁ ଅନାବିଷ୍କୃତ ରହିଛି ଏ ଯାଏ; ବହୁ ପ୍ରତିଭାର ମୂଲ୍ୟାୟନ ଫଳପ୍ରଦ ଭାବେ ଆରମ୍ଭ ବି ହୋଇନାହିଁ । ତେଣୁ କାର୍ଯ୍ୟର ଅନ୍ତ ନାହିଁ; ଅଧିକନ୍ତୁ ସାଂପ୍ରତିକ କାଳରେ ଆଞ୍ଚଳିକ ଭାଷା ଓ ସାହିତ୍ୟର ଦାବୀ ଅଧିକ ସ୍ପଷ୍ଟ ଭାବେ ଉଚ୍ଚାରିତ ହୋଇଛି, ଯାହା ଫଳରେ ଆମର ସମନ୍ୱିତ ବିକାଶ ନିମିତ୍ତ ଆମ ବିଶ୍ୱବିଦ୍ୟାଳୟ ପରିସରଭୁକ୍ତ ପଶ୍ଚିମାଞ୍ଚଳୀୟ ଭାଷାର ଭାଷାବିଜ୍ଞାନ – ସମ୍ମତ ଅଧ୍ୟୟନ ହୋଇ ପଡ଼ିଛି ଏକ ଜାତୀୟ କର୍ତ୍ତବ୍ୟ । ଏହି ପ୍ରସଙ୍ଗରେ ପୁନଶ୍ଚ ଓଡ଼ିଶାରେ ରହିଛି ସଂସ୍କୃତିର ଏକ ବିସ୍ତୃତ ପରିସର, ଏହା ଏକ ସତ୍ୟ;

ଭାଷା ସର୍ବେକ୍ଷଣ ନିମିତ୍ତ ମୋର ପ୍ରଥମ ପ୍ରସ୍ତାବ ତଥାପି ବିଚାର୍ଯ୍ୟ ହୋଇପାରିବ । ତଥାପି ତାହା ମଧ୍ୟରେ କେତେକ ସ୍ଥାନୀୟ ବୈଶିଷ୍ଟ୍ୟ ବି ରହିଛି । ଏହାର ଅବିସଂବାଦିତ ପ୍ରକାଶ ମାଧ୍ୟମ ଏ ଅଞ୍ଚଳର ମୌଖିକ ଓ ଲିଖିତ ସାହିତ୍ୟ — ଉଭୟ ଓଡ଼ିଆରେ ଓ ପଶ୍ଚିମାଞ୍ଚଳୀୟ ଭାଷାରେ । ତାହାର ସଂଗ୍ରହ, ସଂକଳନ ଓ ଅନୁଶୀଳନ ପ୍ରତି ଏ ବିଶ୍ୱବିଦ୍ୟାଳୟ ପ୍ରତିଶ୍ରୁତିବଦ୍ଧ । ଏ ଦିଗରେ କିଛି ହୋଇଛି, ବାକିଅଛି ଅନେକ କିଛି । ଓଡ଼ିଆ ଭାଷା ସାହିତ୍ୟ ବିଭାଗ ମାଧ୍ୟମରେ ବିଶ୍ୱବିଦ୍ୟାଳୟ ନିଜପରିସରଭୁକ୍ତ ଅଞ୍ଚଳର ସାଂସ୍କୃତିକ ଆବିଷ୍କାର କଲେ ଆଗ୍ରହୀ ହେବେ, ଏହା ନିଶ୍ଚିତ । ପକ୍ଷାନ୍ତରେ

ଯୁକ୍ତିସି ସହାୟତାର ଦ୍ୱାର ସଦା ଉନ୍ମୁକ୍ତ । ଲୋଡ଼ା କେବଳ ସୁଚିନ୍ତିତ ଯୋଜନା ଓ ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟ ଅଭିମୁଖରେ ନିଷ୍ଠାପର ଉଦ୍ୟମ ।

କହିବା ବାହୁଲ୍ୟ, ରଜତ ଜୟନ୍ତୀ କାଳର ସିଦ୍ଧି ଭିତ୍ତିରେ ଆଶା ହୁଏ ଯେ ସୁବର୍ଣ୍ଣ ଜୟନ୍ତୀ କାଳରେ ଏ ଧରଣର ବହୁବିଧ ସମ୍ଭାବନା ସଫଳ ହେବାର ବୀଜ ରହିଛି । ସେ ସୁପ୍ତବୀଜ ଅଙ୍କୁରିତ, ପଲ୍ଲବିତ, କୁସୁମିତ ହେଉ, ଜଗଦୀଶ୍ୱର କରନ୍ତୁ !



# ଋଷି କବି ଗଂଗାଧର

**ଡକ୍ଟର ମଣୀନ୍ଦ୍ର କୁମାର ମେହେର**

ଗଂଗାଧର କେବଳ କାବ୍ୟର କବି ନ ଥିଲେ, ସେ ଥିଲେ ଜୀବନର କବି । ଭାରତୀୟ ଋଷି ମହର୍ଷିଙ୍କର ସେ ଥିଲେ ଉପଯୁକ୍ତ ଉତ୍ତରାଧିକାରୀ । ବୈଦିକ ଋଷିର ବିଶାଳ ହୃଦୟ ନେଇ ଏ ଜଗତକୁ ସେ ପ୍ରାଣପୂର୍ଣ୍ଣ ଭାବରେ ଅନୁଭବ କରିଥିଲେ । କବିତା ରଚନା କରି ପାଠକର ଚିତ୍ତବୃତ୍ତିକୁ କ୍ଷଣ କାଳ ପାଇଁ ଉତ୍ତେଜିତ କରିବା ନୁହେଁ, ପାଠକର ହୃଦୟରେ ମହତ ଜୀବନାକାଂକ୍ଷା ଭରି ଦେଇ ଚିର କାଳ ପାଇଁ ତାକୁ ସ୍ପନ୍ଦିତ କରି ରଖିବା ହେଉଛି ତାଙ୍କ କାବ୍ୟ ସାଧନାର ଆଭିମୁଖ୍ୟ । ଯେଉଁ କବିର କବିତା ପାଠ କଲେ ପାଠକର ସଂକୁଚିତ ମନ ସଂପ୍ରସାରିତ ହୋଇଯାଏ, ଯେଉଁ କବିର ଜୀବନ ସଂପର୍କରେ ଚିନ୍ତାକଲେ ଆବିଳ ହୃଦୟ ନିର୍ମଳ ହୋଇଯାଏ ଓ ଦରିଦ୍ର ମନ ଐଶ୍ୱର୍ଯ୍ୟଶାଳୀ ହୋଇଯାଏ ସେହି କବିଙ୍କୁ ଆମେ ଜଣେ ଦିବ୍ୟଦ୍ରଷ୍ଟା ଋଷି ବ୍ୟତୀତ ଆଉ କିଛି କହି ନ ପାରୁ ।

ସହୃଦୟ ପାଠକର ଦୁଇ ଆଖିକୁ ଉଦାରତା ଓ ସମ୍ବେଦନ ଶୀଳତାର ଉପଲବ୍ଧିରେ ଅଶ୍ରୁସିକ୍ତ କରିଥିବା ବିଶ୍ୱକବି ରବୀନ୍ଦ୍ରନାଥ ଓ ଋଷିଆର ମାନବ ବାଦୀ ଅମର କଥାଶିଳ୍ପୀ ଟଲଷ୍ଟୟଙ୍କୁ ଯେପରି ଋଷିର ମର୍ଯ୍ୟାଦା ଦିଆଯାଇଛି ଓଡ଼ଶାର ଏକ ଅଖ୍ୟାତ ପଲ୍ଲୀରେ ଜନ୍ମ ନେଇଥିବା ସ୍ୱଭାବ କବି ଗଂଗାଧରଙ୍କୁ ସେହିପରି ଋଷିର ସମ୍ମାନ ହିଁ ଅର୍ପଣ କରାଯାଇ ପାରେ । ଏ କଥା କହିବା ବାହୁଲ୍ୟ ମାତ୍ର ଯେ ଗଂଗାଧରଙ୍କ ଅନ୍ତରାତ୍ମା ସହ ପରିଚିତ ଥିବା ଜଣେ ସହୃଦୟ ପାଠକ ଗଂଗାଧରଙ୍କ ନାମ ଉଚ୍ଚାରଣ କଲା ମାତ୍ରକେ ପବିତ୍ରତା ଓ ଶୁଦ୍ଧତାର ଏକ କୋମଳ ସ୍ନିଗ୍ଧ ସ୍ପର୍ଶ ଅନୁଭବ କରେ । ଯେଉଁ କବିଙ୍କ ନାମ ଉଚ୍ଚାରଣ ମାତ୍ରେ ଶୁଦ୍ଧତା ଓ ଶୁଭ୍ରତାର ମହିମ୍ନ ସ୍ପର୍ଶ ପାଠକ ଅନୁଭବ କରେ ତାଙ୍କୁ ଜଣେ ଋଷି ଭାବରେ ହିଁ ସ୍ୱୀକାର କରାଯାଇ ପାରେ, ଯାହାଙ୍କ ସ୍ଥାନ କାବ୍ୟ କବିତା ବା ସମାଲୋଚନା ଗ୍ରନ୍ଥ ଭିତରେ କେବଳ ନୁହେଁ, ପାଠକର ଅନ୍ତଃସ୍ଥଳରେ ପ୍ରକୃତରେ ରହିଛି ।

ଗୋଟିଏ ପ୍ରକାରେ ଜୀବନ ବଂଚିବା ଆଉ ଅନ୍ୟ ପ୍ରକାରେ ସାହିତ୍ୟ ଲେଖିବାର ରୀତି ଗଂଗାଧର ଜାଣି ନ ଥିଲେ । ମଣିଷକୁ ଘୃଣା କରି ସାହିତ୍ୟରେ ପ୍ରେମର କଥା ଲିପିବଦ୍ଧ

କରୁଥିବା ଲେଖକର ବାକ୍ୟ ଓ ମଣିଷକୁ ହୃଦୟ ଦେଇ କବିତାରେ ପ୍ରେମର ବାଣୀ ଉଚ୍ଚାରଣ କରୁଥିବା କବିର କବିତା କେବେ ହେଲେ ସମାନ ହୋଇପାରେନା । ଯିଏ ଯେତେ ପ୍ରକାର ମୁକ୍ତି ପ୍ରଦର୍ଶନ କରନ୍ତୁ ନା କାହିଁକି ମଣିଷକୁ ପ୍ରାଣ ଦେଇଥିବା କବିର ଭଷା ହିଁ ନିଶ୍ଚିତ ଭବରେ ଅଧିକ ଶକ୍ତିଶାଳୀ ଓ ଅନ୍ତର୍ଭେଦୀ ।

ଗଂଗାଧର ନିଜ ଅନ୍ତରରେ ପ୍ରଥମେ କବି । ତାଙ୍କର ସମଗ୍ର ଜୀବନରେ ସେଇ କବି ଅନ୍ତର ହିଁ ଫୁଟି ଉଠିଛି ସବଦା । ତାଙ୍କର ଆଚ୍ଚର ବ୍ୟବହାର; କଥାବାର୍ତ୍ତା, ଚଳି ଚଳନରେ ହିଁ ସେ ପ୍ରଥମେ କବିତା ଲେଖିଛନ୍ତି । ନିଜ ହୃଦୟରେ ପ୍ରଥମେ କବିତାର ସରସ ପଦରଚନା ସେ କରିଛନ୍ତି । ସେଥିପାଇଁ କାଗଜରେ ଲେଖା-ଯାଇଥିବା ତାଙ୍କ କବିତା ଏତେ କୋମଳ ଓ ମାର୍ଜିତ । ଜଣେ ସତ୍‌ଶିଳ୍ପୀ କଲମ ଧରିଲେ ତାର ଅନ୍ତରର ପ୍ରେମ ହିଁ କାଳିର ପ୍ରତ୍ୟେକ ବିନ୍ଦୁରେ ଝରିପଡେ । ଈଶ୍ୱରଙ୍କୁ ହତଅ ହୃଦୟରେ ସ୍ମରଣ କରିବା, ଫୁଲର ପ୍ରସ୍ଫୁଟନକୁ ବିହ୍ୱଳ ହୋଇ ଦେଖିବା ଅବା କେଉଁ ମଣିଷର ଦୁଃଖ ଦେଖି ସହାନୁଭୂତିରେ ବିଚଳିତ ହେବା ବା କେଉଁ ଅନ୍ୟାୟୀ ଶାସକର ଅତ୍ୟାଚର ଆଗରେ ନିଜର ସକଳ ଅନ୍ତଶକ୍ତି ନେଇ ଠିଆ ହେବା ଓ କବିତା ଲେଖିବା ଭିତରେ କୌଣସି ପ୍ରକାର ପାର୍ଥକ୍ୟ ନ ଥିଲା ଗଂଗାଧରଙ୍କ ଠାରେ । ଯେ କୌଣସି ମହାନ୍ ଋଷଙ୍କ ଜୀବନ ଓ ତାଙ୍କ ଉଚ୍ଚରିତ ମନ୍ତ୍ର ଭିତରେ ଆମେ ଯେପରି ଅସାମଂ-ଜସ୍ୟ ଦେଖି ପାରିବା ନାହିଁ ଗଂଗାଧରଙ୍କ କବିତା ଓ ତାଙ୍କ ଜୀବନ ମଧ୍ୟରେ ଆମେ ସେହିପରି କୌଣସି ବିଚ୍ଛେଦ ହିଁ ଦେଖି ପାରିବା ନାହିଁ । ନିଜ ଅନ୍ତରରେ ଅନୁଭୂତ ହେଉଥିବା ସତ୍ୟ ବ୍ୟତୀତ ସେ ଆଉ କିଛି କହିନାହାନ୍ତି ଏବଂ ନିଜ ଅନ୍ତରର ବାଣୀ ଦ୍ୱାର ପରିଚ୍ଚଳିତ ହେବା ବ୍ୟତୀତ ଆଉ କାହାରି ନିର୍ଦ୍ଦେଶ ସେ ପାଳନ କରି ନାହାନ୍ତି । ସାହିତ୍ୟର ପ୍ରତ୍ୟେକ ପୃଷ୍ଠାରେ ବିବେକର ବାଣୀକୁ ସେ ଯେପରି ଲିପିବଦ୍ଧ କରିଛନ୍ତି ଜୀବନର ପ୍ରତ୍ୟେକ ପୃଷ୍ଠାକୁ ମଧ୍ୟ ବିବେକର ନିର୍ଦ୍ଦେଶ ଦ୍ୱାର ସଂହତ ଅଥଚ କାବ୍ୟିକ କରିଛନ୍ତି । ସେ ନିଜେ କହିଛନ୍ତି ରଚନା ହେଉଛି ହୃଦୟର ଦର୍ପଣ ବୋଲି । ଲେଖା ଭିତରେ ଲେଖକର ଅନ୍ତର ଫୁଟେ ! ଏଇ ସତ୍ୟକୁ ହିଁ ସେ ନିଜ ଜୀବନରେ ଉପଲବ୍ଧି କରିଛନ୍ତି । ସରଳ ଓ ନିଷ୍କପଟ ମନ ନେଇ ବଂଚୁଥିବା ସ୍ରଷ୍ଟାର ସୃଷ୍ଟି ଯେପରି ସରଳ ଓ ଭବପୂର୍ଣ୍ଣ ହେବ ଆବିଳ ଓ କୁଟିଳ ବୁଦ୍ଧି ନେଇ ବଂଚୁଥିବା ଲେଖକର ସୃଷ୍ଟି ସେହିପରି ଜଟିଳ ଓ ଦୁର୍ବୋଧ୍ୟ ହେବ । ସେଥିପାଇଁ କବିତାକୁ ସରଳ ଓ ସରସ କରିବାକୁ ହେଲେ ନିଜେ ପ୍ରଥମେ କବି ନିଷ୍କପଟ ହେବା ଆବଶ୍ୟକ ଏହାହିଁ ତାଙ୍କର ଆନ୍ତରିକ ମତ ଥିଲା ।

ଜଣେ ପ୍ରକୃତ କବିର କବିତା ହିଁ ହେଉଛି ତାର ଯଥାର୍ଥ ଆତ୍ମଜୀବନୀ । ଗଂଗାଧର ନିଜର ସଂକ୍ଷିପ୍ତ ଆତ୍ମଜୀବନୀ ଲେଖିଛନ୍ତି; କିନ୍ତୁ ଯଥାର୍ଥରେ ତାଙ୍କର କାବ୍ୟ କବିତା ହିଁ ହେଉଛି ତାଙ୍କର ଅସଲ ଜୀବନ କଥା । ଦୈନନ୍ଦିନ ଜୀବନର ଘଟଣାବଳୀ ବର୍ଣ୍ଣନାରେ କବିର ଆତ୍ମକଥା ସଂପୂର୍ଣ୍ଣ ହୁଏନା । ସେଥି ପାଇଁ ଏ ଯୁଗର ମହାନ୍‌ଯୋଗୀ ମହାକବି ଶ୍ରୀଅରବିନ୍ଦ କହିଥିଲେ ମୋର ଜୀବନର ବାହ୍ୟ ଘଟଣାବଳୀରେ ମୋର ଅନ୍ତରାତ୍ମାକୁ ସଂପୂର୍ଣ୍ଣ ହୃଦୟଂଗମ କରିବା ସହଜ ନୁହେଁ । ଶ୍ରୀଅରବିନ୍ଦଙ୍କ 'ସାବିତ୍ରୀ' ମହାକାବ୍ୟରେ ତାଙ୍କ ଯୋଗ ସାଧନାର ଉତ୍ତରଣକୁ ଯେପରି ଅନୁଭବ କରିହୁଏ ଗଂଗାଧରଙ୍କ 'ତପସ୍ୱିନୀ', 'ପ୍ରଣୟବଲ୍ଲରୀ' ପ୍ରଭୃତି ଶ୍ରେଷ୍ଠ କାବ୍ୟ, ଓ କବିତାରେ ବିଭିନ୍ନ ଚରିତ୍ର ଭିତରେ କବିଙ୍କ

ଅନ୍ତର୍ଜୀବନର ମାର୍ମିକ ଚିତ୍ର ପାଇଛୁଏ । ରାମ ଚନ୍ଦ୍ର, ସୀତା, ଲକ୍ଷ୍ମଣ, ମହର୍ଷୀ ବାଲ୍ମୀକ, ଅନୁକମ୍ପା ଦୁଷ୍ମନ୍ତ; ଶକୁନ୍ତଳା; ପ୍ରିୟମ୍ବଦା ଅନସୂୟା ପ୍ରଭୃତି ଚରିତ୍ର ଭିତରେ କବିଙ୍କ ଜୀବନର ପ୍ରେମ, ତ୍ୟାଗ, ତିତିକ୍ଷାକୁ ଅନୁଭବ କରିହୁଏ ଗଭୀର ଭାବରେ । କେବଳ ମଣିଷ ଚରିତ୍ର ଭିତରେ ନୁହେଁ ପ୍ରକୃତିର ବର୍ଣ୍ଣନା ଭିତରେ ମଧ୍ୟ ନିଜକୁ ସେ ଫୁଟାଇ ଉଠାଇଛନ୍ତି ଚମତ୍କାର ଭାବରେ । ତପସ୍ୱିନୀର 'ତମସା' ଯେପରି ଗଂଗାଧରଙ୍କ ହିଁ ଜୀବନ – ସାଧନାକୁ ବ୍ୟକ୍ତ କରିଛି । କାବ୍ୟରେ ସେ ଫୁଲ ଫୁଟାଇଲେ ଫୁଲର ବାସ୍ନାରେ ତାଂକ ଜୀବନର ସୌରଭ ହିଁ ଆଘ୍ରାଣ କରିହୁଏ । କବିତାରେ ସେ ନିର୍ଝରର ବର୍ଣ୍ଣନା ଦେଲେ । ତାଂକ ପ୍ରାଣର ଉଚ୍ଛ୍ୱାସ ହିଁ ଆମକୁ ସ୍ପର୍ଶ କରେ । ନଦୀର ପ୍ରବହମାନତାକୁ ସେ ଅଙ୍କନ କଲେ ସକଳ ବାଧା ବିଘ୍ନକୁ ଅତିକ୍ରମ କରି ଲକ୍ଷ୍ୟ ସ୍ଥଳରେ ଉପନୀତ ହେଉଥିବା ତାଂକ ମହତ ଜୀବନ ହିଁ ଆମ ଆଖି ଆଗରେ ଉଦ୍ଭାସିତ ହୁଏ । ଆକାଶର କଥା ସେ ଲିପିବଦ୍ଧ କଲେ ତାଙ୍କ ଆତ୍ମାର ବିଶାଳତା ହିଁ ଆମ ଆଖିକୁ ଦିଶିପାଏ । ସମାନ୍ୟ ଖଦ୍ୟୋତର ନିଜସ୍ୱ ଆଲୋକକୁ ସେ ଲେଖିଲେ ତାଙ୍କର ଜୀବନଜ୍ୟୋତିରେ ହିଁ ପାଠକ ଅନ୍ତର ଆଲୋକିତ ହୁଏ ।

ଜୀବନର ଦୁଃଖ ଓ ଦୁର୍ଭାଗ୍ୟକୁ ସ୍ମରଣ କରି ଝାଉଁଳି ପଡ଼ିବା ତପସ୍ୱୀର ଧର୍ମନୁହେଁ । ଗଂଗାଧର ଜୀବନରେ ବହୁ ଦୁଃଖ ଭୋଗିଛନ୍ତି, ବହୁ ଅପମାନ ସହ୍ୟ କରିଛନ୍ତି କିନ୍ତୁ ସାହିତ୍ୟରେ ନିଜ ଆତ୍ମାର ଆନନ୍ଦାନୁଭବକୁ ହିଁ ଅଧିକ ଶକ୍ତିଶାଳୀ ଭାବେ ବ୍ୟକ୍ତ କରିଛନ୍ତି । ସଂସାରର ହେବୁ ଅନୁଭୂତିକୁ ଅତିକ୍ରମ କରି ଅମୃତର ଉପଲବ୍ଧିରେ ପହଂଚିବା ତାଙ୍କ ସାଧନାର ଲକ୍ଷ୍ୟ । 'ମଧୁମୟ' 'ଅମୃତମୟ' କବିତା ପ୍ରଭୃତିରେ ସେହି ଅମୃତ ଅନୁଭବର ପ୍ରତ୍ୟକ୍ଷ ପ୍ରକାଶ ଖୁବ୍ ପ୍ରଭାବଶାଳୀ ଋଷିର ଜୀବନ ବଂଚୁଥିବା ସ୍ରଷ୍ଟା ହିଁ ପ୍ରକୃତରେ ନିଜକୁ ଅମୃତ ସାଗରର ବିନ୍ଦୁ ବୋଲି ଅନୁଭବ କରିପାରେ । ସଇତାନର ଅଭିଶାପ ନୁହେଁ, ଈଶ୍ୱରଙ୍କ ଆଶୀର୍ବାଦକୁ ସଦା ସ୍ମରଣ କରିବାରେ ଗଂଗାଧର ଥିଲେ ତଲ୍ଲୀନ । ଜ୍ୟୋତିର୍ମୟୀ ଦେବୀଙ୍କ ଦର୍ଶନରେ ତାଂଙ୍କ ଦାରିଦ୍ର ସେଥିପାଇଁ ଦୂର ହୋଇଯାଏ, ହୃଦୟ କମଳ ବିକଶିତ ହୋଇଉଠେ । ପାପ ମରଣର ଭୟ ମଧୁର ଝରଣ ଦର୍ଶନ ହରଣ କରିନିଏ । ସ୍ନେହ ଓ ଶ୍ରଦ୍ଧାର ନିବିଡ ବଂଧନ ସମସ୍ତ ଦୁଃଖ ତାପକୁ ତଡ଼ିଦିଏ ।

କବି ଜୀବନରେ ଦୁଃଖ ଭୋଗିଥାଇ ପାରନ୍ତି । କିନ୍ତୁ ଗଂଗାଧରଙ୍କ ନାମ ଉଚ୍ଚାରଣ କଲେ ଦୁଃଖ ତାପରେ ଦଗ୍ଧ ଏକ ଉଦାସୀନ ଓ ବିଷର୍ଣ୍ଣ ରୂପ ଦିଶେନାହିଁ । ଯେଉଁ ରୂପଟି ପାଠକକୁ ଦିଶିଯାଏ ତାହା ଏକ ପ୍ରଶାନ୍ତ, ଗମ୍ଭୀର ସ୍ନିଗ୍ଧ ରୂପ, ଋଷି ଆଶ୍ରମରେ ବିଚରଣ କରୁଥିବା ଏକ ସାଧକର ସୌମ୍ୟମୂର୍ତ୍ତି ।

ଯିଏ ପ୍ରକୃତରେ ସାଧକ ସିଏ ସ୍ୱପ୍ନଲୋକରେ ବିଚରଣ କରିପାରେ, ଆକାଶକୁ ତା'ର ମନ ଉଡ଼ି ଯାଇପାରେ, ଜନ କୋଳାହଳରୁ ଉର୍ଦ୍ଧ୍ୱକୁ ଯାଇ ଆଶ୍ରମର ନୀରବ ନିସ୍ତବ୍ଧ ପରିବେଶରେ ସେ ନିଶ୍ଚଳ ହୋଇଯାଇପାରେ, କିନ୍ତୁ ଲୋକ ଜୀବନ ସହ ତା'ର ସଂପର୍କ ଶିଥିଳ ହୁଏନା । ଗଂଗାଧର ଆଶ୍ରମର କବି ହୋଇପାରନ୍ତି କିନ୍ତୁ ସାଧାରଣ ଜନତା ସହ ତାଂକ ସ୍ନେହର ସହାନୁଭୂତିର ସମ୍ବନ୍ଧ ଅତ୍ୟନ୍ତ ନିବିଡ । ସେଥିପାଇଁ 'ତପସ୍ୱିନୀ' 'ପ୍ରଣୟବଲ୍ଲରୀ' କାବ୍ୟ ଲେଖିପାରୁଥିବା କବି 'କୃଷକ ସଂଗୀତ' ବି ଲେଖନ୍ତି । ରାଜ ପ୍ରାସାଦର ଚିତ୍ର ଅଂକନ କରୁଥିବା କବି ପୌଷ ପୂର୍ଣ୍ଣିମାର ଉତ୍ସବ ମୁଖରିତ ଦିବସର ଚିତ୍ର ମଧ୍ୟ ଆଂକି ପାରନ୍ତି । ସାହିତ୍ୟରେ

ଯେତିକି ନୁହେଁ ଜୀବନରେ ତା'ଠାରୁ ଅଧିକ ଗଭୀର ଭବରେ ସମ୍ବନ୍ଧିତ ହୋଇ ପଡନ୍ତି ସାଧାରଣ ଲୋକାଳୟ ସହିତ । କିଂତୁ ସାଧାରଣ ଲୋକ ସହିତ ସମ୍ବନ୍ଧ ରଖିଲାବେଳେ ସେ ଯେ ନିମ୍ନ ସ୍ତରକୁ ଓହ୍ଲାଇ ଆସନ୍ତି ତା'ନୁହେଁ । ଋଷିର ହୃଦୟନେଇ, ସାଧକର ସଂବେଦନା ନେଇ, ତପସ୍ୱୀର ଗାମ୍ଭୀର୍ଯ୍ୟ ନେଇ ସେ ସମ୍ବନ୍ଧିତ ହୁଅନ୍ତି । ଶ୍ମଶାନ ଭୂମିରେ ତୁଳସୀର ପବିତ୍ରତା ଅକ୍ଷୁର୍ଣ୍ଣ ରହିଲା ପରି କୁଟିଳ ଲୋକର ସଂସ୍ପର୍ଶରେ ମଧ୍ୟ ତା'ଙ୍କ ସରଳତା ନଷ୍ଟ ହୁଏନା । ସରଳ ଲୋକଟିଏ ଦେଖିଲେ ତାଙ୍କୁ ହିଁ ପ୍ରକୃତ 'ମହାଜନ' ବୋଲି ଶ୍ରଦ୍ଧା ବାଢ଼ି ଦିଅନ୍ତି ସେ । ଦୁଃଖ ଓ ଦହନ ଭୋଗ କରି ମଧ୍ୟ ପର ଉପକାରର ପୁଣ୍ୟମୟ ବ୍ରତରେ ସେ ବ୍ରତୀ ଥାଆନ୍ତି । ହୃଦୟ ବିପଦର ଉତ୍ତାପରେ ଦଗ୍‌ଧୀଭୂତ ହେଉଥିଲେ ମଧ୍ୟ ତାଂକ ମୁହଁରୁ ଅମୃତ ବ୍ୟତୀତ ଆଉ କିଛି ସ୍ଫୁରିତ ହୁଏନା ।

କବି ଗଂଗାଧର ଏ ବିଶ୍ୱର ସ୍ରଷ୍ଟାଙ୍କୁ ଅନୁଭବ କରିବାରେ ଯେପରି ଧ୍ୟାନସ୍ଥ ହୋଇଛନ୍ତି, ଜୀବନରେ ଅହଂକାରର ବିଷ ଦଂଶନକୁ ଅନୁଭବ କରି; ତାକୁ ଈଶ୍ୱରଙ୍କ ନିକଟରେ ଅର୍ପଣ କରି ଦେଇ ସଂପୂର୍ଣ୍ଣ ମୁକ୍ତ ହୋଇଯାଇଛନ୍ତି । ଜୀବନର ସାଧକ ହିଁ ଅହଂକାରକୁ ସ୍ୱୀକାର କରିପାରେ ଓ ନିଜକୁ ସମର୍ପିତ କରିଦିଏ ବିଶ୍ୱ ବିଧାତାର ପଦତଳେ । ବିଶ୍ୱ କବି ରବିନ୍ଦ୍ରନାଥ ମଧ୍ୟ 'ଗୀତାଞ୍ଜଳି'ର ପ୍ରଥମ କବିତାରେ ଏଇପରି ନିଜକୁ ସମର୍ପଣ କରିଥିଲେ ।

ପୃଥିବୀରେ କେହି ଚିରଦିନ ବଂଚି ରହେନା । ଯିଏ ଯେତେ ଆଧ୍ୟାତ୍ମିକ ଶକ୍ତିର ଅଧିକାରୀ ହୁଅନ୍ତୁ ନା କାହିଁକି ଜଗତର ନିୟମକୁ ମଥାପାତି ମାନିନେବାକୁ ପଡେ ତାଂକୁ । କିନ୍ତୁ ମୃତ୍ୟୁ ସନ୍ନିକଟ ହେଲେ ସାଧକ ତା'ର ମହତ୍ ପରିଚୟ କୌଣସି ନା କୌଣସି ପ୍ରସଂଗରେ, କୌଣସି ନା କୌଣସି ବାକ୍ୟରେ ସ୍ୱୀକାର କରିଯାଏ । ଦିନେ ଯେପରି ସ୍ୱାମୀ ବିବେକାନନ୍ଦଙ୍କ ମନରୁ ସଂଦେହର ବାଦଲ ଦୂର କରିବା ପାଇଁ ରାମକୃଷ୍ଣ ପରମହଂସ କହିଥିଲେ ଯିଏ ରାମ ସିଏ କୃଷ୍ଣ, ସିଏ ପୁଣି ରାମକୃଷ୍ଣ, ସେହିପରି ପିତାର ମୃତ୍ୟୁ ନିକଟବର୍ତ୍ତୀ ଜାଣି ଶୋକରେ ଅଧୀର ହୋଇ ପଡୁଥିବା ଏକମାତ୍ର ପୁତ୍ର ଓ ଆତ୍ମୀୟ ସ୍ୱଜନଙ୍କ ନିକଟରେ ଗଂଗାଧର କହିଥିଲେ "ମୁଁ ଏକ ଔଷଧ ଗଛ ପରିଥିଲି, ତା'ପରେ ଈଶ୍ୱରଙ୍କ ଯାହା ଇଚ୍ଛା ।"

ଗଂଗାଧରଙ୍କ ଏହି ନମ୍ର ସ୍ୱୀକାରୋକ୍ତି ତାଙ୍କ ଜୀବନର ମହତ୍ତ୍ୱ ଅନୁଭବରେ ଆମକୁ ପୁନର୍ବାର ଉଦ୍‌ବେଳିତ କରିଦିଏ ।

କବି ଗଂଗାଧରଙ୍କ ପରି ଜୀବନ ବଞ୍ଚୁଥିବା ମଣିଷଟିଏ ଋଷି ନିଶ୍ଚୟ । କିଂତୁ କିଛି ଘଟଣା ନ ଘଟିଲେ ଅଥବା କିଛି ଲେଖା ନ ହେଲେ ଆମେ ଋଷିର ହୃଦୟ ନେଇ ବଂଚୁଥିବା ନୀରବ ମଣିଷକୁ ଚିହ୍ନିପାରୁନା । ଏହି ସଂସାରରେ ଗୋଟିଏ ବି କବିତା ନ ଲେଖି, ଗୋଟିଏ ବି ଚାଞ୍ଚଲ୍ୟ ସୃଷ୍ଟିକାରୀ ଘଟଣା ନ ଘଟାଇ ବହୁ ଉଚ୍ଚକୋଟୀର ମଣିଷ ବଂଚନ୍ତି । ତାଂକୁ କାଳ ପୋଛିଦିଏ କହିବା ତ ଠିକ ହେବ ନାହିଁ ଆଦୌ । ପ୍ରକୃତରେ ଗଭୀର ସାଧନାରେ ନିମଗ୍ନ ନୀରବ ଋଷିର ସ୍ମୃତିକୁ ଏଇ ଦୃଶ୍ୟମାନ ଜଗତରେ କାଳ ଧରି ରଖିପାରେ ନାହିଁ । ସେଥିପାଇଁ କାଳର ଗଭୀର ବକ୍ଷରୁ ଅତୃପ୍ତିର କେତେ ଦୀର୍ଘଶ୍ୱାସ ବାହାରି ତାକୁ ଦୋହଲାଇ ଦେଉଥାଏ । ଅଥଚ ନୀରବ ସାଧକଠାରୁ ଏ ଜଗତ ଯାହା ପାଇବାର କଥା ତାହା ପାଇଯାଏ । ଗଭୀର ଅରଣ୍ୟରେ ଜନ କୋଳାହଳର ଅନ୍ତରାଳରେ କେତେ ସୁନ୍ଦର

ଫୁଲ ଫୁଟେ, ପୁଣି ଝରିପଡେ । ସମୟ ସେସବୁ ଫୁଲର ସୌନ୍ଦର୍ଯ୍ୟକୁ ଆମ ଆଖିଆଗରେ ଅମଳିନ କରି ରଖି ପାରେନା । କିନ୍ତୁ ସେଇ ଫୁଲଙ୍କ ସୌରଭରେ ଏ ଜଗତ ଯେପରି ସୁବାସିତ ହେବା କଥା ତାହା ନିଶ୍ଚିତ ଭବରେ ହୋଇଥାଏ । ଜଗତରେ କିଛି ହଜିଯାଏ ନାହିଁ, ଗୋଟିଏ ଫୁଲ ଝରିପଡଲେ ପୁଣି ଅଜସ୍ର ଫୁଲ ଫୁଟେ । ସାଧୁର ସଂକଳ୍ପ ଓ ଫୁଲର ସୁବାସ ଚେତନାର ସୂକ୍ଷ୍ମ ଜଗତରେ ଅମର ରହେ ।

ଯଥାର୍ଥରେ କହିବାକୁ ଗଲେ କବି ଗଂଗାଧରଙ୍କ କାବ୍ୟ କବିତା ସାହିତ୍ୟର ଆକାଶରେ ଉଜ୍ଜ୍ୱଳ ନକ୍ଷତ୍ର । ତାଂକ ଜୀବନର ଦୀପ୍ତି ଜୀବନୀ ଗଛରେ ଭସ୍ୱର ଓ ଲୋକଲୋଚନ ଅଗୋଚରରେ ରହିଯାଇଥିବା ତାଂକ ଆତ୍ମାର କେତେ ମହତ୍ ସ୍ପନ୍ଦନ ଚେତନାରି ଜଗତରେ ଅମର ।



# ଖଗେଶ୍ୱର ଶେଠ

**ଶ୍ରୀ ଗଣେଶ ରାମ ନାହାକ**
ଫାଟକ, ସମ୍ବଲପୁର,

ଅଜସ୍ରସ୍ରାବୀ ତାଙ୍କର ଲେଖନୀ, ଧାରଶ୍ରାବଣ ପରି ତାଙ୍କଆ କଲମ— କାବ୍ୟ ପରେ କାବ୍ୟ ପରେ କାବ୍ୟ । ଅସଂଖ୍ୟ କାବ୍ୟ କବିତାର ସ୍ରଷ୍ଟା ସେ । ଶେଷ ନିଶ୍ୱାସ ଥିବା ପର୍ଯ୍ୟନ୍ତ ସକ୍ରିୟ ଥିଲା ତାଙ୍କର ଲେଖନୀ । ସାରସ୍ୱତ ସେବା ଥିଲା ତାଙ୍କ ପ୍ରିୟ ଓ ପରମ । ଅଥଚ ଏହି ସାହିତ୍ୟ ପ୍ରାଣ କବି ଖଗେଶ୍ୱର ଶେଠ ଆଜି ବି ଅପରିଚିତ କହିଲେ ଚଳେ ।

ସେ ଯେଉଁ ପରିବେଶ ଓ ପରିସ୍ଥିତିରେ ରହି ସାହିତ୍ୟ ସାଧନା କରିଛନ୍ତି ଆମ ସମସ୍ତଙ୍କ ପାଇଁ ଏକ ଆଦର୍ଶ— ପ୍ରେରଣାର ଉତ୍ସ । ଖଗେଶ୍ୱର ଶେଠ ଆଧୁନିକ କାଳରେ ଜନ୍ମହୋଇ ମଧ୍ୟ ଆଧୁନିକ ହୋଇ ପାରି ନଥିଲେ । ଏହା ତାଙ୍କୁ ଦୋଷ ଦିଆଯାଇ ନ ପାରେ । ବୋଧହୁଏ ଏହା ବିଧିର ନିର୍ଦ୍ଦେଶ । ତାଙ୍କର ଆନୁଷ୍ଠାନିକ ଶିକ୍ଷାଗତ ଯୋଗ୍ୟତା ଥିଲା, ଏକାନ୍ତ ଶୂନ୍ । ଗୁହାଳ ପଡାରେ ଯେଉଁ ସାମାନ୍ୟ ଅକ୍ଷର ପରିଚୟ ହୋଇଥିଲା,ସେତିକି ମାତ୍ର ସମ୍ବଳ ଘେନି ସେ ଆଗେଇ ଆସିଥିଲେ ସାରସ୍ୱତ ସୃଷ୍ଟି-ପାଇଁ । କବିଙ୍କ ଜୀବନ ପ୍ରସଙ୍ଗରେ ଗୋପିନାଥ ମହାନ୍ତ କହିଛନ୍ତ— " କବି ଶ୍ରୀ ଖଗେଶ୍ୱର ଶେଠ ଜଣେ ପ୍ରତିଭଶାଳୀ କବି । ପ୍ରାଚୀନ ଓଡ଼ିଆ ସାହିତ୍ୟ ତାଙ୍କର କଣ୍ଠସ୍ଥ ଅଛି ଏବଂ ତାଙ୍କ ନିଜ ରଚନା ବହୁତ । ବାଳ ପାଚିଲାଣି, ଜୀବନର ଧୁକୁଡ଼ା-ଗରଡରେ ସ୍ୱାସ୍ଥ୍ୟ ମଉଳି ପଡୁଛି, କିନ୍ତୁ କବିତାର ନାଁ। ଶୁଣିଲେ ଅଦ୍ୟାପି ଆଖିରେ ବିଜୁଳି ଖେଳିଯାଏ । କଲମ ଅଟକି ନାହିଁ । ଯେଉଁ ପାରି ପାର୍ଶ୍ୱିକ ଅବସ୍ଥା ମଝିରେ ଏହାଙ୍କର କାବ୍ୟ କୁସୁମା ବଳୀର ବିକାଶ ହୋଇଛି ଶୁଣିଲେ ସ୍ତବ୍ଧ ହୋଇ ରହିବାକୁ ପଡେ । ଏ କବି ଜାତିରେ କୈବର୍ତ୍ତ; ସାମାଜିକ ସ୍ତରରେ ଝଷୀ ମୂଳିଆ ଶ୍ରେଣୀର । × × × କବି ମୂଲ ଲାଗନ୍ତି, ହଳ କରନ୍ତି, ଜଙ୍ଗଲରୁ କାଠ କାଟିଆଣି × × × ଏବଂ ମୁଢ଼ି ଲିଆ ଭଜନ୍ତ । ମହାତ୍ମା ମାନଙ୍କର ଏପରି ଦୈନ୍ୟଦଶା ଇତିହାସରେ ବିରଳ ନୁହେଁ । କବି (Burns) ହଳ କରୁଥିଲେ, ପୃଥିବୀର ଶ୍ରେଷ୍ଠ ଔପନ୍ୟାସିକ (Knut Hamsun) ଆଳୁ କ୍ଷେତରେ ଖତ ମଡାଇବା ମୂଲିଆ ଥିଲେ । ×

ସେହିପରି କବି ଖଗେଶ୍ୱର ଶେଠ । ବୀର-ସମ୍ବଳ ସମ୍ବଲପୁର ଜିଲ୍ଲାରେ, ଯେଉଁଠି ଗଙ୍ଗାଧର ବିହାର କରିଗଲେ, ତାଙ୍କର କିଚକ-ଭୂଇଁ ବିଜେପୁର ଥାନା ଇଲାକାରେ ବୁଟେମାଳ ଗ୍ରାମରେ ପୁଣ୍ୟ ଶ୍ଲୋକ କବି ଖଗେଶ୍ୱର ଶେଠଙ୍କର କବି କୁଟୀର ।

ଆଜି ଯେଉଁ ଯୁଗରେ କୁକୁଡା ଡମ୍ବ, ମାଛ, ବିଲାତି ଆଳୁ ପାଇଁ ଜାତୀୟ ଯୋଜନା ଅଛି କିନ୍ତୁ ସାହିତ୍ୟ ପାଇଁ ନାହିଁ, ସେତେବେଳେ କବି ପୋଥିର କି ମର୍ଯ୍ୟାଦା? ଈଶ୍ୱରଙ୍କର ଦୂତ ସାହିତ୍ୟିକ କଳାଶକ୍ତିର କାଳିସୀ ହୋଇ କେବଳ ଶ୍ମଶାନର ଅଙ୍ଗାର ପାର୍ଶ୍ୱରେ ଭଗୀ । × × × ଲୋକେ କହିବେ, ଗଙ୍ଗାଧର ଏ ଉଷର ଭୂଇଁରେ ବିକଳ୍ପେ ଜନ୍ମ ହୋଇଥିଲେ ସିନା ସମ୍ବଲପୁରରେ ଆଉ କବି ନାହାନ୍ତି । ଆମର ଅଭିଯୋଗ— ସମ୍ବଲପୁର ଜିଲ୍ଲାରେ ଅଦ୍ୟାପି ଗଙ୍ଗାଧରଙ୍କ ଆତ୍ମା ରୂପ ପରିଗ୍ରହ

କରିଛନ୍ତି, କିନ୍ତୁ ପୁଞ୍ଜିବାଦୀ, ବସ୍ତୁବାଦୀ ଯୁଗ ତାଙ୍କୁ ଦେଖିବି ପରିଚୟ ସ୍ୱୀକାର କରୁନାହିଁ ।

ବାସ୍ତବିକ ତାଙ୍କର ଜୀବନ ଥିଲା ଅତ୍ୟନ୍ତ କରୁଣ ଓ ଦୁଃଖ । ଏହି ଲେଖକ ପାଖରେ ଅନେକ ଥର ତାଙ୍କ ଦୁଃଖଦ କୌଶୋରର ସ୍ମୃତି ଗୁଡ଼ିକ ମନେ ପକାଇ ଅଶ୍ରୁ ସଜଳ ହୋଇଯାନ୍ତି । ଜୀବନ ଯନ୍ତ୍ରଣାରେ ସେ ଅହରହ ସନ୍ତୁଳିତ ହେଉଥିଲେ । ମଧ୍ୟ ଲେଖିଯାଇଛନ୍ତି କାବ୍ୟ ପରେ କାବ୍ୟ—କେହି କେହି ଆଦର କରୁ ବା ନକରୁ । କିଏ ତାଙ୍କୁ ଅର୍ଘ୍ୟ ଦେଲା କି ନାହିଁ, ତାଙ୍କର ପ୍ରତିଭା ଅଛି କି ନାହିଁ; ସେ ଭାବି ବସି ନାହାନ୍ତି ।

ପ୍ରତିଦିନ କବିଙ୍କୁ ଭୋର ସମୟରୁ ଉଠି ମୁଢ଼ି ଭାଜିବା ପାଇଁ ଧାନ କୁଟିବାକୁ ପଡୁଥିଲା । ପରେ ତାଙ୍କ ସ୍ତ୍ରୀଙ୍କୁ ମୁଢ଼ି ଭାଜିବା ଏବଂ ଧାନ ସଂଗ୍ରହ କାମରେ ସହଯୋଗ କରୁଥିଲେ । ଏହି ଜଞ୍ଜାଳ ମଧ୍ୟରେ ରହି ସୁଦ୍ଧା କବି ଅବସର ବାହାର କରି ବାଗ୍‌ଦେବୀଙ୍କ ସେବାରେ ମନୋନିବେଶ କରୁଥିଲେ ।

କବି ଖଗେଶ୍ୱର ଶେଠ୍‌ଙ୍କ ଜନ୍ମସ୍ଥାନ ବରଗଡ ନିକଟବର୍ତ୍ତୀ ସରସରା ଗ୍ରାମ । ତାଙ୍କ ଜନ୍ମ ୧୯୦୬ ମସିହା ଅପ୍ରେଲ୍ ୨୬ ତାରିଖ (ଅକ୍ଷୟତୃତୀୟା)ରେ ପିତାଙ୍କ ନାମ ହୃଷିକେଶ ଶେଠ, ମାତାଙ୍କ ନାମ ଯାଜ୍ଞସେନୀ । ତାଙ୍କ ପିତା ଥିଲେ ଜଣେ ସାଧାରଣ ଲେଖକ । ପ୍ରାଚୀନ ସାହିତ୍ୟ ଏବଂ ପୁରାଣ ଶାସ୍ତ୍ରରେ ବେଶ୍ ପ୍ରବେଶ ଥିଲା । ପିତାଙ୍କର ଏହି ପ୍ରାଚୀନ ସାହିତ୍ୟ ଚର୍ଚ୍ଚା କବିଙ୍କ ଜୀବନରେ ଯଥେଷ୍ଟ ପ୍ରଭାବ ପକାଇଥିଲା ।

ତାଙ୍କ ପିତାଙ୍କ ସାତୋଟି ସନ୍ତାନ । ଚାରୋଟି ପୁଅ ଓ ତିନୋଟି କନ୍ୟା । ସର୍ବ କନିଷ୍ଠ ହେଉଛନ୍ତି କବି । କବି ଜନ୍ମରୁ ପୀଡ଼ିତ ଥିଲେ । ତାଙ୍କ ମାଆଙ୍କର କ୍ଷୀର ନହେବାରୁ ସେ ଗୋଟିଏ ହରିଜନ ସ୍ତ୍ରୀର କ୍ଷୀର ପାନକରି ବଞ୍ଚିଥିଲେ । ବାଲ୍ୟକାଳରେ କବି ନିତାନ୍ତ ଦୁର୍ବଳ ଥିଲେ । କ୍ଷୀଣ ଶରୀର ଯୋଗୁଁ ତାଙ୍କୁ ଗାଁ ଲୋକେ କଙ୍କାଳୁ ବୋଲି ଡାକୁ ଥିଲେ । ଏହି କରୁଣ ଜୀବନ ତାଙ୍କର 'ପୁରଙ୍ଗୀ' କାବ୍ୟରେ ବର୍ଣ୍ଣନା କରିବାକୁ କବି ଭୁଲି ନାହାନ୍ତି ।

ଆଗ କାଳରେ ସ୍କୁଲ ଶିକ୍ଷକମାନେ ଛାତ୍ରମାନଙ୍କୁ କଠୋର ଭାବରେ ପ୍ରହାର କରୁଥିଲେ ତାରି ଭୟରେ ସେ ମୂଳରୁ ସ୍କୁଲ ଗଲେ ନାହିଁ । ତେଣୁ ଚଟଶାଳୀ ପାଠରେ ଯେଉଁ ସାମାନ୍ୟ ଅକ୍ଷର ପରିଚୟ ହୋଇଥିଲା, ସେତିକି ମାତ୍ର ଶିକ୍ଷା । ଏହା ଅବଶ୍ୟ ତାଙ୍କର ପିତାଙ୍କ ଅବହେଳା ଯୋଗୁଁ । ସାତୋଟି ସନ୍ତାନର ଜନକ ତାଙ୍କ ପିତା ଦାନା କନାରେ ଅହରହ ବ୍ୟସ୍ତ ରହୁଥିବାରୁ ପୁତ୍ର କନ୍ୟାମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ଧ୍ୟାନଦେଇ ପାରୁ ନଥିଲେ ।

ଏତେ ବଡ ପରିବାର ଭରଣ ପୋଷଣ ସକାଶେ ତାଙ୍କ ପିତା ସବୁବେଳେ ଚିନ୍ତିତ ରହୁଥିଲେ । ଆର୍ଥିକ ସ୍ଥିତି ମଜବୁତ କରିବା ପାଇଁ ତାଙ୍କ ପିତା ସରସରା ଗ୍ରାମ ତ୍ୟାଗ କରିବାକୁ ବାଧ୍ୟ ହେଲେ । ମଧ୍ୟପ୍ରଦେଶ ଅନ୍ତର୍ଗତ ରାୟପୁର ଜିଲ୍ଲାର ସୁର୍ଙ୍ଗପାଲି ଗ୍ରାମରେ ସପରିବାର ବାସ କଲେ । ସେଠାରେ ସାମାନ୍ୟ ପରିମାଣର ଜମି କ୍ରୟ କଲେ । ନିଜର କୌଳିକ ବ୍ୟବସାୟରୁ ମଧ୍ୟ କିଛି ରୋଜଗାରକଲେ । କିନ୍ତୁ ଭାଗ୍ୟର ବିଡମ୍ବନା, ଏଠାର କିଛିଦିନ ପରେ ମାତାଙ୍କ ମୃତ୍ୟୁ ହେଲା । ମାତାଙ୍କ ମୃତ୍ୟୁର ଛଅମାସ ପରେ ତାଙ୍କ ପିତାଙ୍କ ମୃତ୍ୟୁ ହେଲା । ସେତେବେଳେ କବିଙ୍କୁ ମାତ୍ର ୧୩/୧୪ ବର୍ଷ ।

ପିତାମାତାଙ୍କ ବିୟୋଗ ପରେ କବି ତାଙ୍କ ବଡ ଭାଇଙ୍କ ଆଶ୍ରୟରେ ରହିଲେ । କିନ୍ତୁ ତାଙ୍କ ଭାଉଜଙ୍କ କଠୋର ବ୍ୟବହାରରେ ସେ ଅତିଷ୍ଠ ହୋଇ ପଡୁଥିଲେ । କେବେ କେବେ ଭାଉଜଙ୍କ ଦୁଃବ୍ୟବହାର ତାଙ୍କୁ ଏତେ ବାଧୁଥିଲା ଯେ, ସେ ପିତା ମାତାଙ୍କର ଶ୍ମଶାନ ସ୍ଥାନକୁ ଯାଇ କରୁଣ ଭାବରେ କ୍ରନ୍ଦନ କରୁଥିଲେ । ବଡ ଭାଇ, ଭାଉଜଙ୍କ ସ୍ନେହ ଶୂନ୍ୟ

ବ୍ୟବହାରରେ ମ୍ରିୟମାଣ ଚହାଇ ପଡୁଥିଲେ ଯେ । ଦିନେ ଦିନେ ନ ଖାଇ ରହିଯାଉଥିଲେ । ଚକ୍ଷୁ ଅଶ୍ରସିକ୍ତ ରହୁଥିଲା ସବୁବେଳେ । ନୀରବରେ ପିତାମାତାଙ୍କୁ ଡାକୁ ଥିଲେ ।

କବିଙ୍କ ଦୁଃଖ ଦୁର୍ଦ୍ଦଶା ଶୁଣି ତାଙ୍କ ନିଜ ମାଉସୀ ତାଙ୍କ ନିଜ ଘର ପାଣିମୋଗ ଆସିଲେ । ଏହି ଗ୍ରାମଟି ସୋହେଲା ନିକଟରେ ଅବସ୍ଥିତ । ଠୋରେ କବି ମଉସା ମାଉସୀଙ୍କ ସ୍ନେହ ସହାନୁଭୂତି ପାଇ ସୁଖରେ ରହିଲେ । ବିଭିନ୍ନ କାମ ଧନ୍ଦାରେ ମଧ୍ୟ ସେ ମଉସା ମାଉସୀଙ୍କୁ ସାହାଯ୍ୟ କରୁଥିଲେ । ଏହି ଗ୍ରାମରେ ତାଙ୍କ ନିଜ ମାମୁଁ ଘର ଥିଲା । କିନ୍ତୁ ମାମୁଁ ଘରେ ତାଙ୍କୁ ପଚାରୁ ନ ଥିଲେ ।

ମାଉସୀଙ୍କ ପୁଅ ଝିଅ ନ ଥିବାରୁ ପରେ କବିଙ୍କୁ ପୋଷ୍ୟ ପୁତ୍ର ଭାବରେ ଗ୍ରହଣ କରିଥିଲେ । ତାଙ୍କ ମାଉସୀ ସୂର୍ଯ୍ୟମୁଖୀ ଅଲେଇ ବଟଲେଇ ଲୋକଟିଏ । ଦୁଃଖରେ ଦୁଃଖ ବୁଝନ୍ତି, ଡିଳାର୍ଦ୍ଧ କୂଟ କପଟ ନାହିଁ, ଶାନ୍ତ, ନୀରିହ, ଗାଁଟ ସାର ସୁଖ ପାନ୍ତି, ବିଶ୍ୱାସ କରନ୍ତି ।

ବୟସ ହେବାକ୍ଷଣି କବିଙ୍କୁ ବିବାହ କରି ଦେଲେ ତାଙ୍କର ମଉସା, ମାଉସୀ । ଜୀବନ ଜଞ୍ଜାଳ ବଢିଗଲା ତାଙ୍କର । ତଥାପି ଏ ସବୁ ଲାଞ୍ଛନା, ତାଡନା, ଦୈନ୍ୟରେ ମଧ୍ୟ ତାଙ୍କର ଅଧ୍ୟୟନ ପ୍ରବୃତ୍ତି ଥିଲା ଅତ୍ୟଧିକ । ଏହି ଅଧ୍ୟୟନ ପ୍ରବୃତ୍ତି ହିଁ ତାଙ୍କୁ ପରବର୍ତ୍ତୀ ଜୀବନରେ କବି ହେବା ପାଇଁ ପ୍ରେରଣା ଯୋଗାଇଥିଲା ।

କ୍ରମେ ତାଙ୍କ ପରିବାର ବଢିବାକୁ ଲାଗିଲେ । ଆର୍ଥିକ ଆୟ ସେତେ ନ ଥିଲା । କରିବେ କଣ - ଅଧିକ ଆର୍ଥିକ ସ୍ୱଚ୍ଛଳତା ସନ୍ଧାନେ ଶ୍ୱଶୁରଘର ଗାଁ (ତାଳପଦର)କୁ ଗଲେ । ସେଠାରେ ୧୪/୧୫ ବର୍ଷ ରହିବା ପରେ ପୁଣି ଚାଲିଗଲେ ତାଳପଦର ନିକଟବର୍ତ୍ତୀ ବୁରେମାଲ ଗ୍ରାମକୁ । ସେଠାରେ ସ୍ଥାୟୀ ଭାବରେ ଏକ ଘର କରି ରହିଲେ । ଏହି ଏହି ଗ୍ରାମରେ କବି ଅବସ୍ଥାନ କାଳରେ ଲେଖକ ବରାବର ତାଙ୍କ ପାଖକୁ ଯାଇ ବହୁ ପ୍ରକାର ବହି ଏବଂ ପତ୍ର ପତ୍ରିକା ଆଣି ପଢିଛି । ଗଦା ଗଦା ବହି ଏବଂ ପୁରୁଣା ପତ୍ର ପତ୍ରିକା ଥିଲା । କବି ସେ ସବୁ ଯତ୍ନରେ ସାଇତି ରଖିଥିଲେ । ମୋର ସାହିତ୍ୟ ପ୍ରତି ଅନୁରାଗ ଦେଖି ସେ ଖୁସି ହୋଇ ଯେଉଁ ବହି ମାଗିଲେ ଦେଉଥିଲେ । ବହି ଦେବାରେ ମୋ ପ୍ରତି କୁଣ୍ଠା ନଥିଲା ତାଙ୍କରି । ଓଡ଼ିଶାରେ ପ୍ରକାଶିତ ଅଧିକାଂଶ ସାହିତ୍ୟ ପତ୍ରିକା ସେ ସାଇତି ରଖିଥିଲେ, ତାଙ୍କ ନିକଟକୁ ପ୍ରେରିତ ପତ୍ର ମଧ ସୁରକ୍ଷିତ ରଖିଥିଲେ ତାଙ୍କର ବିପୁଳ ପାଠାଗାର ଦେଖି ଯେ କେହି ବି ବିସ୍ମୟ ପ୍ରକାଶ କରୁଥିଲେ— ସାମାନ୍ୟ ଜଣେ ଗୃହାଳ ମଡା ବ୍ୟକ୍ତିର ଜିଜ୍ଞାସୁ ମନୋବୃତ୍ତି ଦେଖି ।

କବିଙ୍କୁ ଯେତେବେଳେ ଦଶବର୍ଷ ହେଉଥିଲା ସେ ଗାଁର ଯାତ୍ରା ଦଳରେ ଯୋଗ ଦେଇଥିଲେ । ସେହି ଦିନ ଠାରୁ ତାଙ୍କ କବିତା ଲେଖିବା ଅଭ୍ୟାସ ଆରମ୍ଭ ହୋଇଥିଲା । କବିଙ୍କୁ ଯାତ୍ରା ଦଳର ଓଗର-ଗୀତ ଗାଇବା ଓ ଅଭିନୟ ଦେଖାଇବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ସେ ନିମ୍ନ ଗୀତଟି ରଚନା କରି ସ୍ୱର ସହିତ ଗାଇଥିଲେ —

ମୋତେ ଓଗର ବୋଲି କେ ଡାକରେ<br>
ମୋତେ ଓଗର,<br>
ଘରେ ନାହିଁ କେହି ଏକାଅଛି ମୁହିଁ<br>
ଡାକ ଶୁଣି ମୋ ଛାତି ଚମକେ ରେ<br>
ମୋତେ……

କବିଙ୍କର ଏ ଗୀତଟି ଶୁଣି ଦର୍ଶକ ତଥା ଯାତ୍ରାଦଳର ଲୋକଙ୍କୁ ମଧ୍ୟ ବିସ୍ମିତ ଓ ମୁଗ୍ଧ କରିଥିଲା । ଏ ଗୀତଟି ଶୁଣି କବିଙ୍କର ପିତା କବିଙ୍କୁ ଯଥେଷ୍ଟ ଉତ୍ସାହ ଦେଇଥିଲେ ଏବଂ କହିଥିଲେ ମୋ ପୁଅ ଦିନେ କବି ହେବ । ବାପାଙ୍କ କଥା ସତ ହେଲା । କବି ଭାବରେ ଆଦର ପାଇଲେ । ପ୍ରଶଂସା ପାଇଲେ ।

ପାଣିମୋର ଗ୍ରାମରେ ଅବସ୍ଥାନ କାଳରେ କବି କେତୋଟି ଛୋଟ ଛୋଟ ଗୀତିନାଟ୍ୟ ରଚନା କରିଥିଲେ ଏବଂ ସେଗୁଡ଼ିକ ଅଭିନୟ କରାଇ ବେଶ୍ ପ୍ରଶଂସା ପାଇଥିଲେ । 'ବୃତ୍ତବର୍ଦ୍ଧନ', 'ଶତ୍ରୁଜିତ-ସଂହାର' ଆଜି ଗୀତିନାଟ୍ୟ ସେ ଅଞ୍ଚଳରେ ଚହଳ ପକାଇ ଦେଇଥିଲା । ବହୁ ଜାଗାରେ ଏହା ସେ ସମୟରେ ଅଭିନୀତ ହୋଇଥିଲା ।

କବି 'ଉପହାର' ନାମକ ଏକ ହାତ ଲେଖା ମାସିକ ପତ୍ରିକା ପାଣିମୋରରେ ପ୍ରକାଶ କରୁଥିଲେ । ଏଥିରେ କବିତା, ଗଳ୍ପ ଆଦି ରଚନାମାନ ସ୍ଥାନ ପାଉଥିଲା । କହିବାକୁ ଗଲେ ଏହି ଗ୍ରାମରେ ତାଙ୍କର କବି ଜୀବନର ଆରମ୍ଭ ହୋଇଥିଲା ।

'ସୁରଙ୍ଗୀ' ଖଗେଶ୍ୱରଙ୍କର ପ୍ରଥମ କାବ୍ୟ । ତାପରେ ସେ ସଜନୀ; କନ୍ୟା ସମର୍ପଣ, ବଧୂ-ଗ୍ରହଣ, ସୂକ୍ତିମାଳ, ହଳିଆଘଇ, ପ୍ରଭୁଭକ୍ତି, ବିଷାଦ ନିଶା, ନାରୀ ଗୁହାରୀ, କୃଷ୍ଣ-କିଶୋରୀ, କୃତ୍ରିମ ସାଧନ, ଚଷା-ମୂଲ୍‌କିହସା, ଧନ୍ୟ କଳିକାଳ, ସମାଜ, ପଏଣ୍ଟି ସତୀ, ଅଶ୍ରୁ ତର୍ପଣ, କୁସୁମ-ସୁନ୍ଦରୀ, ମାତା-ମହନ୍ତ, ଠକ ଠାକୁର, ମହାପ୍ରଭୁ, ପ୍ରଣୟ ନିର୍ଝର, ଗରିବ, ଅନ୍ତିମ ଚିନ୍ତା, ନୃସିଂହନାଥ, ଆମେ ଗରୀବ କାହିଁକି, ଚଇତ ଅମାସ୍ୟା, ଗରିବ ଆଦି ବହୁ କାବ୍ୟ କବିତା ରଚନା କରିଛନ୍ତି । ତାଙ୍କର ପ୍ରଥମ ଭାଗ ଗ୍ରନ୍ଥାବଳୀ ପ୍ରକାଶ ପାଇଛି । ଏହାର ପ୍ରଥମ ସଂସ୍କରଣ 'ଓଡ଼ିଶା ସାହିତ୍ୟ ଏକାଡେମୀ' ପ୍ରକାଶ କରିଥିଲା । ପରେ କବି ନିଜେ ଏହାର ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଛନ୍ତି । ଏହା ଏକ ବିରାଟ ଗ୍ରନ୍ଥାବଳୀ । ଏଥିରେ ସର୍ବମୋଟ ୨୫ ଟି କାବ୍ୟ ସ୍ଥାନ ପାଇଛି । ଆହୁରି ଅନେକ ପ୍ରକାଶିତ ଅପ୍ରକାଶିତ କାବ୍ୟ କବିତା ଅଛି । ବୋଧହୁଏ ଆହୁରି ଦୁଇଭାଗ ହେବ । ତାଙ୍କର ବିପୁଳ ସାରସ୍ୱତ ଜଗତ ସଂପର୍କରେ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା କହନ୍ତି :—"ସୁଦୂର ମଫସଲରେ ଏହିଭଳି ଜଣେ ପ୍ରତିଭାଶାଳୀ କବି ଲୋକଲୋଚନ ଅଗୋଚରରେ ପଡ଼ିରହିଥିବା ଯେତିକି ଆଶ୍ଚର୍ଯ୍ୟର ବିଷୟ ନୁହେଁ, ତତୋଧିକ ଭାବରେ କ୍ଷୋଭର ବିଷୟ । ଖଗେଶ୍ୱରଙ୍କର ସମଗ୍ର ଗ୍ରନ୍ଥାବଳୀ ପ୍ରକାଶ ପାଇଲେ ସେ ବୋଧହୁଏ ସାହିତ୍ୟ ସୃଷ୍ଟିର ପରିମାଣରେ ଚିନ୍ତାମଣିଙ୍କୁ ମଧ୍ୟ ବଳିଯିବେ ।

କବିଙ୍କ କାବ୍ୟ କବିତା ଗୁଡ଼ିକରେ ମଧ୍ୟ-ଯୁଗୀୟ ସାହିତ୍ୟ ବିନ୍ୟାସ ଓ ସଙ୍ଗୀତମୟ ଶୈଳୀ ଦେଖିବାକୁ ମିଳେ । ଶୈଳୀ ପ୍ରାଚୀନ ଜଣାଗଲେ ହେଁ ବିଷୟ ବସ୍ତୁ ଅତୀତର ନୁହେଁ—ସାଂପ୍ରତିକ ।

ଜୀବନ ଜଞ୍ଜାଳ ମଧ୍ୟରେ କବି ବିଦେଶୀ ଶାସନ ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ସଂଗ୍ରାମରେ ଭାଗ ନେଇ ପାରିନ ଥିଲେ ମୁଦ୍ଧା ନିଜର ବଳିଷ୍ଠ ଲେଖନୀରେ ଏହାର ତୀବ୍ର ସମାଲୋଚନା କରିଛନ୍ତି ଏବଂ ଜନ ଜାଗରଣ ପାଇଁ ନିୟତ ପ୍ରୟାସ କରିଛନ୍ତି । ଏ କବିତାଟି ସେ ସମୟରେ ପଶ୍ଚିମ ଓଡ଼ିଶାରେ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା—

"ଯେ ଦିନୁ ଭାରତେ ଚଳିଲା ବେପାରୀ ରାଜନୀତି କାରଖାନା;
ପରାଧୀନତାହିଁ ମୂଳ ହେତୁ ହେଲା ମାରିବାକୁ ଆମବାନା ।
ଲୁଣ କାଠ ଆଜି ଆମରି ଜିନିଷେ ଆମକୁ ଲାଗିଲା କର;
ବିଦେଶୀ ଭୂଲାକି ଆମରି ଟଙ୍କାରେ ଆମକୁ କଲା ଭିକର ।
ଛିଡ଼ିଲା ଶୃଙ୍ଖଳା ଭାଙ୍ଗିଗଲା କ୍ରମେ ଜାତୀୟ ଏକତା ବଳ;
ଘରେ ଘରେ ଆମ ବଣ୍ଟାହେଲା ଭାଇ ବିବାଦର ବିଷ ଫଳ ।

ବିଦେଶୀ ଫାନ୍ଦରେ ଲଟକି ପଡ଼ଲୁ ଅଟକିଗଲା ଜୀବିକା;
ତହିଁ ପରେ ବାବୁ- ବେକାମି ଖରଚେ ମନ ପ୍ରାଣ ଦେଲୁ ବିକା ।

× × × ×

କାହିଁ ସେ ପୂରୁବ ଭରତ ଗୌରବ କାହିଁ ସେହି ଧନ ଧାନ୍ୟ;
କାହିଁ ସେ ସ୍ୱାଧିନ ପ୍ରାଣ ପୃଥ୍ୱୀରାଜ ମହାରାଜ ମହାମାନ୍ୟ ।

'ବାଣିଜ୍ୟ ବସତେ ଲକ୍ଷ୍ମୀଃ' ଏ ଭରତୀ ଭରତରେ କାହିଁ ଆଜି ?
ଭରତ ଲକ୍ଷ୍ମୀକି ବୁଡାଇ ନେଉଛି ଯେଣୁ ବେପାରୀ ଇଂରେଜି ।

'ଚଉତିଶା ଚନ୍ଦ୍ର କଳା' କବିଙ୍କର ଏକ ବିଶିଷ୍ଟ କୃତି । ଏଥିରେ ଷୋଳଗୋଟି କବିତା ସ୍ଥାନ ପାଇଛି । ଏହା ପ୍ରାଚୀନ ଶୈଳୀରେ ରଚିତ ହୋଇ ଥିଲେ ବି ସମ ସାମୟିକ ସାମାଜିକ ଜୀବନର ବୈଚିତ୍ର୍ୟମୟ ଅନୁଭୂତି ଓ ଅଭିଜ୍ଞତା ମନୋଜ୍ଞ ଭବରେ ପରିସ୍ଫୁଟ । ବହୁବିଧ ସଂସ୍କାର, ଗାନ୍ଧୀମତ ପ୍ରଚର, ନାନା ଯୁକ୍ତି, ଋଷୀ ମୂଳିଆ ସଂପ୍ରଦାୟକୁ ଉଦ୍‌ବୋଧନ, ଆତ୍ମ ସମୀକ୍ଷା ଆଦି ବହୁ ବିଷୟରେ ଏଥିରେ ପର୍ଯ୍ୟାଲୋଚନା କରଯାଇଛି ।

ପଚ୍ଚଶଟିରୁ ଉର୍ଦ୍ଧ୍ୱ ଚଉତିଶା ସେ ରଚନା କରିଛନ୍ତି । ଓଡ଼ଆ ଚଉତିଶା ସାହିତ୍ୟରେ କବି ଖଗେଶ୍ୱରଙ୍କର ଚଉତିଶା ବୋଧହୁଏ ସର୍ବାଧିକ । ଏଥିରେ ତାଙ୍କର ଶିଳ୍ପ ସୃଷ୍ଟିକୁ ଅନବଦ୍ୟ ରୂପ ଓ ରସ ଗୌରବ ପ୍ରଦାନ କରିଛି । ଅଧ୍ୟାପକ ନାରୟଣ ପୃଷ୍ଟିଙ୍କ ମତରେ :— "କେବଳ ସଂଖ୍ୟା ଦୃଷ୍ଟିରୁ ନୁହେଁ, ଚଉତିଶା ରଚନା କଳାର କଠୋର ନିୟମ ରକ୍ଷା କରି ସତର ପ୍ରକାର ଗୀତିରେ ଚଉତିଶା ରଚନା କରି ସେ ତାଙ୍କର ସିଦ୍ଧହସ୍ତତା ପ୍ରତିପାଦନ କରିଛନ୍ତି । ଚଉତିଶା ସାହିତ୍ୟର ସତର ଗୀତିରୁ ଛରି ପାଞ୍ଚ ପ୍ରକାରର ଗୀତି ଓଡ଼ଆ ସାହିତ୍ୟରେ ପ୍ରଚଳିତ ଥିଲ । ଏହାର କଠୋର ଅକ୍ଷୁର୍ଣ୍ଣ ନିୟମ ରକ୍ଷା ଅନ୍ୟ କବିଙ୍କ ପାଖରେ ଦେଖା ଯାଏ ନାହିଁ । ମାତ୍ର 'ମଧ୍ୟା ଆଦ୍ୟାନୁପ୍ରାସ, ମଧ୍ୟା ଉପାନ୍ତ୍ୟା, ଆଦ୍ୟାନ୍ତା, ଆଦ୍ୟମଧ୍ୟାନ୍ତ୍ୟା, ଏକ ପାଦଦ୍ୟା, ଦ୍ୱିତାସଂଶ୍ଳିଷ୍ଟା, ଶାଢୀ ସଂଶ୍ଲିଷ୍ଟ, ବିପରୀତା, ଖଣ୍ଡିତା, ପ୍ଳୁତା ଓ ସଂଖ୍ୟାନୁକ୍ରମଣିକାରେ ରଚିତ ଚଉତିଶା ଗୁଚ୍ଛକ ହେଉଛି ଓଡ଼ଆ ସାହିତ୍ୟକୁ କବି ଖଗେଶ୍ୱର ସେଠଙ୍କ ଅଭିନବ ଅବଦାନ ।

ନାରୀ ହେଉଛି ଜଗଜ୍ଜନନୀ ଆଦ୍ୟାଶକ୍ତି । ସମାଜ ଓ ଦେଶର କେନ୍ଦ୍ରବିନ୍ଦୁ ପାରିବାରିକ ଜୀବନରେ ତାର ଭୂମିକା ଅନସ୍ୱୀକାର୍ଯ୍ୟ । ସେ ଜନନୀ, ଭଗିନୀ ଓ ଜାୟା । ନାରୀର ତ୍ୟାଗ, ସ୍ନେହ, ମମତା, କର୍ତ୍ତବ୍ୟବୋଧ ଓ ଆତ୍ମୋତ୍ସର୍ଗ ବଳରେ କେବଳ ପରିବାର ବିକାଶ ଲଭ କରେ ନାହିଁ; ସମଗ୍ର ସମାଜ ମଧ୍ୟ ବିକାଶ ପଥରେ ଆଗେଇ ଯାଏ । ନାରୀ ଓ ପୁରୁଷର ଯୁଗ୍ମଜୀବନ ଯାତ୍ରାରୁ ଜାଗତିକ ସକଳ ଭବ ବିଭବର ଉଦ୍‌ଭବ ଓ ବିକାଶ । କେବଳ ପୁରୁଷ ଏକଛଟିଆ ଭବରେ ସମାଜର ସର୍ବମୟ କର୍ତ୍ତା ନୁହେଁ । ନର ଓ ନାରୀର ନିବିଡ ସହଯୋଗରେ ହିଁ ସୃଷ୍ଟିର ସ୍ଥିତି । ଏଣୁ ଉଭୟଙ୍କର ସମାନ ସ୍ଥିତି ସମାନ ଅଧିକାର ଓ ସମାନ ଦାୟିତ୍ୱ । ନାରୀକୁ ଅବହେଳା ବା ଅବଜ୍ଞା କରିଦେଇ ପୁରୁଷ ଆପଣାର କର୍ତ୍ତୃତ୍ୱ ବିସ୍ତାର କରିଦେଲେ ସମାଜ ବିପର୍ଯ୍ୟୟର ସମ୍ମୁଖୀନ ହୁଏ । ଯେଉଁଠି ନାରୀ ନିର୍ଯ୍ୟାତୀତ, ଉପେକ୍ଷିତ, ଓ ଲାଞ୍ଛିତ ହୋଇଥାଏ

ସେଠାରେ ସମାଜର ନୈତିକ ସ୍ଖଳନ ଘଟିଥାଏ । ତେଣୁ କବି ଚାହିଁଛନ୍ତି ସମାଜରେ ନାରୀର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରହୁ । ସମ୍ମାନ ଅତୁଟ ରହୁ । ଯେଉଁଠି ନାରୀ ଅବହେଳିତ କିମ୍ବା ଅପମାନିତ କବି ପ୍ରାଣ ତାଙ୍କର ବ୍ୟାକୁଳ ହୋଇ ଉଠିଛି—

ଜଗତର ହିତେ ଧନ-ଅଧିକାର ତୁମ୍ଭ ହସ୍ତେ ଅର୍ପି ଈଶ୍ୱର,
ବୀଣାପାଣି କରେ ଦେଲେ, ସେ' ପ୍ରକାରେ ବିଦ୍ୟା-ଭର ସାର ବିଶ୍ୱର;
ଜନନୀ ! ଦହିହୁଏ ମର୍ମ ବିଳାପେ,
ବିଦ୍ୟାଧନେ ନାରୀ ନୁହେ ଅଧିକାରୀ ଅନ୍ଧ ସମାଜର ପ୍ରଳାପେ ।

× × × ×

ଠକ, ଅବିଶ୍ୱାସୀ, ମୂର୍ଖ, ମିଥ୍ୟାଭାଷୀ ହେଲେ ବି ତ' ପତି ଅର୍ଚ୍ଚିତ
ସତ୍ୟ-ଗୁଣବତୀ ନହେଲେ ଯୁବତୀ, ପତି-ସ୍ନେହାଦରୁ ବଞ୍ଚିତ;
ଜନନୀ ! କେଡେ ପକ୍ଷପାତୀ ଧରମ ?
ଏ ଧରମ ଗଢିଥିବା ସମାଜକୁ ନ' ମାଡେ କି ଲାଜ ସରମ !
ଭ୍ରାନ୍ତଥିଲେ, ଦେବୀ ଦୃଷ୍ଟିଦିଅ ଦେବି ! ଶାନ୍ତ-ଧୃତି ଅସ୍ତୁ ପରଣେ,
'ନାରୀଧର୍ମ' ଅଛି, 'ନରଧର୍ମ' ବୋଲି ଲେଖା ନାହିଁ କାହିଁ ପୁରଣେ;
ଶାସ୍ତ୍ରରେ, ଦାବୀ ନାହିଁ ଯଦି ନାରୀର;
ଶାସ୍ତ୍ରାଦେଶ କିପା ମାନିବଟି ନାରୀ, ଅନ୍ଧାରି ଲେଖନୀ ଧାରୀର ?
'କାମିନୀ କାଞ୍ଚନ' ପାପର ଲଞ୍ଚନ ପ୍ରଚାରନ୍ତ କେତେ ପଣ୍ଡିତ,
କିନ୍ତୁ, କାମୀ ଜାର ହଜାର ହଜାର, ସ୍ୱର୍ଣ୍ଣଭୂଷାରେ ବି ମଣ୍ଡିତ;
କାହିଁତ,' ଲେଖି ନାହାନ୍ତ ସେ' ପୋଥିରେ;
"କାମୀ-ଚାମୀକର ପରିହାର କର, ଗତି ମୁକ୍ତି ନାହିଁ ଏଥିରେ ।"
ବିଧବାର ଚିହ୍ନ ବହିବ ଅଙ୍ଗନା । ଗହଣା କାଢ଼ ସବୁଅଙ୍ଗରୁ,
ସତୀ, ସାଧବୀ ସେ' ବୋଲାଇବ; ମରି ପାରିଲେ ପତିର ଆଗରୁ;
ଏ ରୀତି; ଉଲଟିଲେ ମହାପାତକ
ଧନ୍ୟ ସେ ପଣ୍ଡିତ, ଯେ ଲେଖିଛି ନାରୀ ଧରମର ଜାତକ ।

କବି ଖଗେଶ୍ୱରଙ୍କର ସାରସ୍ୱତ ସାଧନାର ମୂଳରେ ରହିଛି ସମାଜ ସଂସ୍କାର ପ୍ରୟାସ । ସାଂପ୍ରତିକ ସମାଜରେ ଘଟିଯାଉଥିବା ଲାଞ୍ଚ-ମିଛ, ଅନ୍ୟାୟ, ଅତ୍ୟାଚାର, ଶୋଷଣ, ଅବିଚାର, ଧର୍ଷଣ, ପରସ୍ୱାପହରଣ ପଟୁତା, ତୋଷାମଦ-ପ୍ରିୟତା, ଭୀରୁତା, କପଟତା, ଗର୍ବ, ଆତ୍ମ-ବଡ଼ିମାକୁ କଠୋର ଭାବରେ ସମାଲୋଚନା କରିଛନ୍ତି । ତାଙ୍କର ବିଭିନ୍ନ କାବ୍ୟ-କବିତାରେ ।

ସେ କହୁଥିଲେ— "ପଶ୍ୟତୀତି ପଶୁଃ" ଅର୍ଥାତ୍ ଆଖି ଆଗରେ ଘଟିଯାଉଥିବା ଯାବତୀୟ ଦୋଷ ଦୁର୍ବଳତା, ଅନ୍ୟାୟ ଅବିଚାରକୁ ଦେଖି ମଧ୍ୟ ନଦେଖିଲା ପରି ରହିଯାଏ ସେ ମାନବ ସମାଜର ପଶୁ ।

ସମ୍ବଲପୁରୀ ଭାଷାରେ ଲିଖିତ ପଏ୍ଞ୍ଚ'ସତୀ' କା'ବ୍ୟ କବିଙ୍କର ଏକ ଅନୁପମ ସୃଷ୍ଟି । ଏହା ଆଞ୍ଚଳିକ ଭାଷାରେ ଲିଖିତ ଏବଂ ପ୍ରକାଶିତ ସର୍ବ-ପ୍ରଥମ କାବ୍ୟ । ଏହି କାବ୍ୟର ସୂଚନାରେ କବି ଲେଖିଛନ୍ତି— "ପଏ୍ଞ୍ଚ'ସତୀ" ସଧବା ନୁହେଁ କିମ୍ବା ବିଧବା ନୁହେଁ— ପତିବ୍ରତା ସତୀ ନୁହେଁ, ମିଥ୍ୟା ଭାଷିଣୀ ଅସତୀ ନୁହେଁ । ଏ କେବଳ ମୁକ୍ତ ପଲ୍ଲୀ ଜୀବନ ସଂପୃକ୍ତ ବିଭିନ୍ନ ଦିଗରେ ଲାଳାୟିତ ବ୍ୟକ୍ତିତ୍ୱର ସାଙ୍କେତିକା, ବହିଃ ପ୍ରଦ-ର୍ଶନୀ ପୁଣ୍ୟାନୁଷ୍ଠାନର ଚିତ୍ରପଟରେ ଗୁପ୍ତ ଛାୟାର ଜୀବନ୍ତ ମୂର୍ତ୍ତି ।"

ସେ ଥିଲେ ଏକାନ୍ତ ଭାବେ ସମାଜ ସଚେତନ । ତାଙ୍କ ଲେଖନୀରେ ବାସ୍ତବ ଜୀବନର ଚିତ୍ର ଏକାନ୍ତ ସଜୀବ ହୋଇଅଛି । ଶଠତା, ଛଳନା, ପ୍ରତାରଣା, ଅତ୍ୟାଚାର, ନିଷ୍ଠୁରତା, ଅତ୍ୟାଚାରରେ ଆଜି ସାମାଜିକ ଜୀବନ ବିପର୍ଯ୍ୟସ୍ତ । ଟାଉଟରଙ୍କ କାରସାଦି ପୋଗୁଁ ଆଜି ଗାଉଁଲୀ ଲୋକେ କିପରି ତଳିତଳାନ୍ତ ହେଉଛନ୍ତି ସେ ଏହା ତାଙ୍କର "ସମାଜ, ଧନ୍ୟ କଳିକାଳ, ମତ୍ୟ-ସମାଚାର, ଚଷା ମୂଲ୍‌କିହସା, ଗରୀବ, ଆଦି କାବ୍ୟ କବିତାରେ ମନୋଜ୍ଞ ଭାବରେ ଚିତ୍ରଣ କରିଛନ୍ତି ।

ସୁରଙ୍ଗୀ କବିଙ୍କର ଏକ ଉତ୍କୃଷ୍ଟ କାବ୍ୟ । ଏହି କାବ୍ୟରେ କବି ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରିଛି । ଯଦିଓ ଏହା କବିବର ରାଧାନାଥ ଙ୍କ ଚିଲିକା କାବ୍ୟର ଅନୁସରଣରେ ଲିଖିତ ତଥାପି କବିଙ୍କର ମୌଳିକ ଭାବଧାରାରେ ଉର୍ଦ୍ଧ୍ୱସ୍ଥଳା ଏ କାବ୍ୟ ସଂପର୍କରେ ବିଶିଷ୍ଟ ସମାଲୋଚକ କେଶବ ଚନ୍ଦ୍ର ମେହେର କହନ୍ତି— "ଅଳ୍ପ କଥାରେ କହିବାକୁ ଗଲେ, କବି ପାଠକଙ୍କୁ ହସାଉ ହସାଇ ଯେପରି ସାମାଜିକ ଶିକ୍ଷା ଦେଇଯାଇଛନ୍ତି, ସେହିପରି ଦୁଃଖ-ବାଦି ଚିତ୍ରଣରେ ମଧ୍ୟ ଜୀବନର ଏକ ବିଶିଷ୍ଟ ଦର୍ଶନ ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇଦେଇ ଅଛନ୍ତି । ତତୁପରି କାବ୍ୟଟିର ଅଧିକାଂଶ ପଦ ସମ୍ଭ୍ରାନ୍ତ କବି ପ୍ରତିଭାର ଅଭ୍ରାନ୍ତ ନିର୍ଦ୍ଦେଶ ଦେଇ-ଥାଏ । ସୁତରାଂ କବି ଚିତ୍ରର ବହୁ ଉପାଦାନ ନେଇ 'ସୁରଙ୍ଗୀ' ସୁରଙ୍ଗିନୀ ତଥା ସୁରଞ୍ଜନୀ ହୋଇ ପାରିଅଛି ।

'ଅଭାବେ ସ୍ୱଭାବ ନଷ୍ଟ' ବୋଲି ଗୋଟିଏ ପ୍ରବଚନ ଆମ ଭାଷାରେ ପ୍ରଚଳିତ । କିନ୍ତୁ କବି ଖଗେଶ୍ୱର ଏହି ପ୍ରବଚନ ଉପରେ ତର୍କଣା ଉପସ୍ଥାପିତ କରି ଏକ ନୂତନ ତତ୍ତ୍ୱ ପ୍ରତିପାଦନ କରିଛନ୍ତି । ଅଭାବରେ ସ୍ୱଭାବ ନଷ୍ଟ ହୁଏ ନାହିଁ ବରଂ ସ୍ପଷ୍ଟରୂପେ ପ୍ରକଟିତ ହୋଇଥାଏ । କବି ଭାଷାରେ—

"ଅଭାବେ ସ୍ୱଭାବ ନଷ୍ଟ" ଯେ'ମାନେ କହନ୍ତି,
ତାଙ୍କ ମଧ୍ୟେ ବେଶି ଆତ୍ମଦୋଷାଚ୍ଛାଦୀ'ଛନ୍ତି ।
କି ଅଭାବେ ? କା ସ୍ୱଭାବ ? ନଷ୍ଟ କି ପ୍ରକାରେ ?
ଜ୍ଞାତ ହୋଇଛି କି ଏହା ଅଭ୍ରାନ୍ତ ବିଚାରେ ?
ପରୀକ୍ଷା-ନିରୀକ୍ଷା ହୋ'ଇଛି କି ଭଲଭାବେ ?
ସ୍ୱଭାବ ନଷ୍ଟ ହୁଏ କି ବସ୍ତୁର ଅଭାବେ ?
ବସ୍ତୁ ଅଭାବେ ସ୍ୱଭାବ ହୁଏନାହିଁ ନଷ୍ଟ
ତସ୍କର ହୁଏନି ସାଧୁ ଲଭିଲେହେଁ କଷ୍ଟ ।

ସମ୍ବଲପୁର ବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ 'ସପ୍ତର୍ଷି' ପତ୍ରିକାର ଚତୁର୍ଥ ବର୍ଷ ନବମ ସଂଖ୍ୟାରେ କବିଙ୍କ ପ୍ରକାଶିତ 'ତୁଳସୀ ଗଛଟିଏ ମୋତେ କର' ଏକ ଉଚ୍ଚକୋଟୀର କବିତା । କବି ପରବର୍ତ୍ତୀ ଜନ୍ମରେ ଏକ ତୁଳସୀ ଗଛ ରୂପେ ଜନ୍ମ ନେବାକୁ ଇଚ୍ଛା ପ୍ରକାଶ କରିଛନ୍ତି । କାରଣ ତୁଳସୀ ଗଛର ମହତ୍ତ୍ୱ ଉଦ୍‌ଭିଦ ଜଗତରେ ସର୍ବଶ୍ରେଷ୍ଠ । ଏହାର ଆୟୁର୍ବେଦୀୟ ଗୁଣ, ଧର୍ମ-ନୈତିକ ମହତ୍ତ୍ୱ ଯୋଗୁଁ ସର୍ବଜନ ପ୍ରଶଂସିତ । ଏହାର ମହନୀୟ ଗୁଣ ଯୋଗୁଁ ସମଗ୍ର ହିନ୍ଦୁ ସମାଜରେ ପୂଜିତ ଓ ସମ୍ମାନିତ । ଏ ପରି ଏକ ମହତ୍ତ୍ୱପୂର୍ଣ୍ଣ ସମ୍ମାନ ଜନକ ଜୀବନ ଇହ ଜଗତରେ

ଆଉ କାହିଁ ? ତେଣୁ ପରବର୍ତ୍ତୀ ଜୀବନରେ ନିଜକୁ ଏକ ତୁଳସୀ ବୃକ୍ଷ ରୂପେ ଆବିର୍ଭୂତ କରାଇବାକୁ ଚାହିଁବା ତାଙ୍କର ସରଳ, ଶୁଦ୍ଧ-ପବିତ୍ର ମନୋବୃତ୍ତିର ପରିଚାୟକ । ଏ କବିତାଟି ଯେପରି ହୃଦ୍ୟ; ସେପରି ମନୋଜ୍ଞ । ଏହାର ପ୍ରତିଟି ପଦ ଆମ ପାଇଁ ଶିକ୍ଷଣୀୟ । କିଛି ଅଂଶ ଦେଖନ୍ତୁ;

× × ×

ଟଙ୍କା ଲୋଭୀ ଟଙ୍କା ଅର୍ଜନେ ଯେ ପାପ
ବୃଦ୍ଧି କରୁଛି ଗୁପତେ,
ତୁମେ ତ ସରବ ଅନ୍ତର୍ଯାମୀ ତାହା
ଜଣାଅଛି ଆଉ ମତେ ।
ଏ ଘେନି ପ୍ରଭୁ ହେ । ଏତିକି ପ୍ରାର୍ଥନା
ନିଏଁ ଯହିଁ ଜନ୍ମାନ୍ତର,
ତୁମ ସୃଷ୍ଟିରେ ଏ ଅରଣ୍ୟେ ତୁଳସୀ
ଗଛଟିଏ ମୋତେ କର ।

ମହାଭାରତର ଦ୍ରୌପଦୀ ହେଉଛନ୍ତି ଏକ ମହନୀୟ ଆଉ ପବିତ୍ର ଚରିତ୍ର । ଏହି ଚରିତ୍ର କବି ଖଗେଶ୍ୱରଙ୍କ ନିପୁଣ ଲେଖନୀରେ ଅଧିକ ଭାବରେ ମହନୀୟ ହୋଇ ଉଠିଛି । କୌଣସି ମୁଖ୍ୟ କାବ୍ୟ ନାୟକ ବା ନାୟିକାଙ୍କର ଚରିତ୍ରିକ ମହତ୍ତ୍ୱ ବର୍ଣ୍ଣନା ପାଇଁ ପ୍ରଶସ୍ତ କ୍ଷେତ୍ର ହେଉଛି କାବ୍ୟ ବା ମହାକାବ୍ୟ । ଏକ କ୍ଷୁଦ୍ର କବିତାରେ ଆଶା କରାଯାଇ ନପାରେ । ଦୌପଦୀ ଚରିତ୍ରର ବର୍ଣ୍ଣନା ପାଇଁ କବି କୌଣସି ଏକ କାବ୍ୟ ରଚନାର ପରିକଳ୍ପନା କରି ନାହାନ୍ତି । ଏକ କ୍ଷୁଦ୍ର କବିତାରେ କେତି ଘଟଣା ପ୍ରସଙ୍ଗ ବର୍ଣ୍ଣନା ମାଧ୍ୟମରେ ଦୌପଦୀଙ୍କର ଚରିତ୍ରିକ ମହତ୍ତ୍ୱ ସଂପର୍କରେ କେତେକ ବୈଶିଷ୍ଟ୍ୟର ସୂଚନା ପ୍ରଦାନ କରି ଅଛନ୍ତି ।

କୁରୁ ସଭା । ଦୁଃଶାସନ ଅନାର୍ଯ୍ୟ ଭାବରେ ଦୌପଦୀଙ୍କର କେଶ ଗୁଚ୍ଛ ଧରି ସଭାମଧ୍ୟକୁ ଟାଣି ଆଣିଲେ । ସଭାରେ ସମସ୍ତେ ସ୍ତବ୍ଧ, ସ୍ତମ୍ଭୀଭୂତ । ପାଞ୍ଚାଳିଙ୍କ ପଞ୍ଚ-ବଲ୍ଲଭ, ଅଧୋମୁଖ । ଦୌପଦୀଙ୍କ ଚକ୍ଷୁ ଅଶ୍ରୁସିକ୍ତ । ଅସହାୟ ଭାବରେ ପଞ୍ଚପାଣ୍ଡବଙ୍କ ସହାୟତା ପାଇଁ ସେ ପ୍ରାର୍ଥନା କରିଛନ୍ତି । କିନ୍ତୁ ସେମାନେ ନୀରବ । କାରଣ ସେ ହୋଇଛନ୍ତି ବିଜିତା । ପଞ୍ଚ-ବଲ୍ଲଭଙ୍କ ଠାରୁ କୌଣସି ପ୍ରତିକାର ବ୍ୟବସ୍ଥା ନପାଇ ଦୌପଦୀ ବିନୀତ ଭାବରେ, କରୁଣ ସ୍ୱରରେ ସଭାସଦ୍‌ମାନଙ୍କୁ ସହାୟତା ପାଇଁ ନିବେଦନ କରିଛନ୍ତି । ସଭାରେ ଉପସ୍ଥିତ ଅଛନ୍ତି ପିତୃତୁଲ୍ୟ ଗୁରୁତୁଲ୍ୟ ମାନ୍ୟଗଣ୍ୟ ସମ୍ମାନାସ୍ପଦ ବ୍ୟକ୍ତି । ସମସ୍ତେ ମୌନ । କେହି ତାଙ୍କୁ ଉପସ୍ଥିତ ବିପଦରୁ ପରିତ୍ରାଣ କରିବାକୁ ବାହାରିଲେ ନାହିଁ । ଶେଷରେ ସେ ନିରାଶ୍ରୟ ଓ ନିଃସହାୟ ଭାବରେ ଆକୁଳ ନିବେଦନ କରିଛନ୍ତି । ଏହି ବିଷୟଟିକୁ ନେଇ କବି ଏକ କ୍ଷୁଦ୍ର କବିତା "କୃଷ୍ଣା କାକୁତି" ରଚନା କରିଛନ୍ତି । କବିତାଟି କ୍ଷୁଦ୍ର; ଅଥଚ ଏହାର ଭାବ, ଭାଷା, ରୀତି ତଥା ଅଳଙ୍କାର ବିନ୍ୟାସରେ ସ୍ୱାଦ୍ୟ ଏବଂ ଅନୁପମ ହୋଇଛି ଉତ୍କଳ ଭାରତୀଙ୍କ ଗଳାରେ ଏ କବିତାଟି ହେଉଛି କବିଙ୍କର ଏକ ଯଥା ଯୋଗ୍ୟ ଉପହାର ମାଳା ।

'ପରଖିଥାଆନ୍ତୁ ପଦେ', 'ଚଇତ ଅମାବସ୍ୟା' କବିର କରୁଣ ଚିତ୍କାର ଆଦି କାବ୍ୟ କବିତାରେ କବି ଲେଖକର କର୍ତ୍ତବ୍ୟ, ପାଠକର କର୍ତ୍ତବ୍ୟ ଓ ସମାଲୋଚକର କର୍ତ୍ତବ୍ୟ କିପରି ହେବା ଉଚିତ ସେ ସଂପର୍କରେ ସୂଚନା ଦେଇଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ, କାବ୍ୟର ସ୍ୱରୂପ ସଂପର୍କରେ କହିବାକୁ ଯାଇ ସେ ଲେଖିଛନ୍ତି —

"ତାହା ସିନା କାବ୍ୟ , ଥାଏ ଯହିଁ ସାର୍ବଜନୀନ ଉପାଦେୟତା ।

ଏ ପର୍ଯ୍ୟାୟରେ କବି "ରଚକ ଓ ସମାଲୋଚକ" ନାମକ ଏକ ଗଦ୍ୟ ପୁସ୍ତକ ରଚନା

କରିଛନ୍ତି । ଏଥିରେ ସେ ରଚକ ଓ ସମାଲୋଚକର ଭେଦ ନିରୂପଣ କରିଛନ୍ତି । ଏହି ପୁସ୍ତକରେ ସେ ୧୧୫ ପ୍ରକାର ରଚକ ଓ ସମାଲୋଚକ ନିର୍ଣ୍ଣୟ କରିଛନ୍ତି । ଏହି ପୁସ୍ତକଟି କବିଙ୍କର ଓଡ଼ିଆ ସାହିତ୍ୟକୁ ଏକ ବିଶିଷ୍ଟ ଅବଦାନ ।

କବି ଏକାନ୍ତ ଭାବରେ ଈଶ୍ୱର ବିଶ୍ୱାସୀ ଓ ଧର୍ମପରାୟଣ ବ୍ୟକ୍ତି ଥିଲେ । କିନ୍ତୁ ଭଜନ,କୀର୍ତ୍ତନ, ମନ୍ଦିର ଦର୍ଶନ, ମେଳା-ମହୋତ୍ସବରେ ଯୋଗଦାନ, ବ୍ରତ ଉପବାସ ପାଳନ, ବାହ୍ୟ ଉପଚାର କୈନ୍ଦ୍ରିକ ଆରାଧନାରେ ବିଶ୍ୱାସୀ ନଥିଲେ ।

ପିଲାଦିନେ କବି ଶିଶୁଭକ୍ତ ଧ୍ରୁବଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦିନେ ଏକୁଟିଆ ଏକ ଛୋଟିଆ ଅରଣ୍ୟକୁ ଚାଲିଯାଇଥିଲେ ଏବଂ ସେହି ଅରଣ୍ୟ ମଧ୍ୟସ୍ଥ ଏକ ସମତଳ ପାଷାଣ ଚଦର ଉପରେ ଗୋଟିଏ ମଣ୍ଡଳାକାର ରେଖା ଅଙ୍କନ କରି ତନ୍ମଧ୍ୟରେ ସାରରାତି ଈଶ୍ୱରୋପାସନାରେ କଟାଇ ଥିଲେ । କୌଣସି ସରୀସୃପ କିମ୍ବା ହିଂସ୍ର ବନ୍ୟଜନ୍ତୁ ତାଙ୍କର କୌଣସି ଅନିଷ୍ଟ କରି ନଥିଲେ । ପିଲାଟି ଦିନରୁ ସେ ଥିଲେ ଏକାନ୍ତ ଈଶ୍ୱର ବିଶ୍ୱାସୀ ଏବଂ ସରଳ ବିଶ୍ୱାସୀ । ଅଯଥା ଲୋକମାନଙ୍କ ମନରେ କଷ୍ଟ ନଦେବା ପାଇଁ ବରାବର କହୁଥିଲେ । ଏହି ମହତ୍ ଚିନ୍ତାଧାରା ତାଙ୍କ ରଚନାବଳୀରେ ଅନେକତ୍ର ପ୍ରତିଫଳିତ । କବିଙ୍କ ଅପ୍ରକାଶିତ 'ଶ୍ରୀପଦେ ପୁଷ୍ପ' କବିତା ଗୁଚ୍ଛ ଭକ୍ତିପ୍ରାଣତାର ଶ୍ରେଷ୍ଠ ନିଦର୍ଶନ । ତାଙ୍କର ଭକ୍ତିରସାତ୍ମକ କବିତାଗୁଡ଼ିକ ମଧ୍ୟରେ 'ନିବେଦନ' ଏକ ଉଚ୍ଚ ଶ୍ରେଣୀର କବିତା । କବି ଏ କବିତାରେ ଭଗବାନଙ୍କ ଦୁଃଖ ମାଗିଛନ୍ତି ଏବଂ ତାଙ୍କ ଭାଗରେ ଯାହା ସୁଖ ଅଛି, ତାହା ଅନ୍ୟମାନଙ୍କୁ ଦେବା ପକାଶେ ଅନୁରୋଧ କରିଛନ୍ତି—

ବହି ପାରିବାର ବୋଝ ଦିଅ ପ୍ରଭୋ ।
ସହି ପାରିବାର ଦୁଃଖ ଦିଅ
ଦୁଃଖ ଭୋଗୀ ପାଦେ ପରଶିବା ଲାଗି
ମୋ ଭାଗ୍ୟ-ଭାଗରୁ ସୁଖ ନିଅ ।

ସାହିତ୍ୟ ସେବାଲାଗି ମାନସିକ ସ୍ଥିରତା ଓ ଶାନ୍ତି ଆବଶ୍ୟକ । କିନ୍ତୁ କବିଙ୍କ ଧୈର୍ଯ୍ୟ ଅସାଧାରଣ; ସେ ଅସ୍ଥିରତା, ଅଶାନ୍ତି ଓ ଜଞ୍ଜାଳ ମଧ୍ୟରେ ରହି ବାଣୀ ଆରାଧନାରୁ ବିଚ୍ୟୁତ ହୋଇ ନ ଥିଲେ । ତାଙ୍କ ପାରିବାରିକ ଜୀବନ ଦୁଃଖମୟ ଥିଲା ।

କବି ଖଗେଶ୍ୱର ୯/୧୦ ବର୍ଷରୁ ସାରସ୍ୱତ ସେବାରେ ବ୍ରତୀ ହୋଇଥିଲେ । ତାଙ୍କ ଜୀବନରେ ସେ କେବେ କୌଣସି ବିଦ୍ୟାଳୟରେ ପ୍ରବେଶ କରି ନାହାନ୍ତି କିମ୍ବା କୌଣସି ଗୁରୁଙ୍କ ଠାରୁ ଶିକ୍ଷା ଲାଭ କରି ନଥିଲେ । ସ୍ୱକୀୟ ପ୍ରଜ୍ଞା ଶକ୍ତି ଖଟାଇ ନିଜେ ନିଜେ ପଢି ଏକ ଅସାଧାରଣ ସିଦ୍ଧିର ଅଧିକାରୀ ହୋଇ ପାରିଥିଲେ । ଶିକ୍ଷିତ ସମାଜ ପ୍ରତି ଏହା କମ୍ ପ୍ରେରଣାର କଥାନୁହେଁ । ପ୍ରତିକୂଳ ପରିସ୍ଥିତି ପ୍ରତି ତିଳାର୍ଦ୍ଧ ଭ୍ରୂକ୍ଷେପ ନ କରି ଚାଲିଥିଲା ତାଙ୍କର ଲେଖନୀ । ସେ ଓଡ଼ିଆ ସାହିତ୍ୟରେ ଯେଉଁ ପବିତ୍ର ସାଧନା କରି ଯାଇଛନ୍ତି, ଏହା ଇତିହାସରେ ବିରଳ । ସାହିତ୍ୟର ବିକାଶ ଲାଗି ଅକଳନ୍ତି ତାଙ୍କର ପ୍ରାଣର ପିପାସା, ସଂକୀର୍ଣ୍ଣ ପରିବେଶ ଓ ଅନାଟନ ମଧ୍ୟରେ ଅସାଧ୍ୟ ତାଙ୍କର ସାଧନା ।

କବି ଜୀବିତାବସ୍ଥାରେ କେବେ କେବେ ଆମ ଗାଁକୁ ଆସୁଥିଲେ । ଗାଁ ଲୋକେ ତାଙ୍କୁ ଖୁବ୍ ଆଦର କରୁଥିଲେ । ସମ୍ମାନ ଦେଉଥିଲେ । ଅନ୍ତତଃ ୧୦/୧୫ ଦିନ ରହି - ଯାଉଥିଲେ । ବହୁବ୍ୟକ୍ତି ତାଙ୍କ ସାହିତ୍ୟର ଅନୁରାଗୀ ଥିଲେ । ଏହି ଲେଖକ ଘରେ ମଧ୍ୟ ଆତିଥ୍ୟ ଗ୍ରହଣ କରୁଥିଲେ । ଯାହା ଖାଇବାକୁ ଦେଲେ ସନ୍ତୁଷ୍ଟ ଭାବରେ ଖାଉଥିଲେ । ଶୟନ ପୂର୍ବରୁ ସାହିତ୍ୟ ସଂପର୍କିତ ବହୁ ବିଷୟ ଚର୍ଚ୍ଚା କରୁଥିଲେ । ପଢା ପଢି କରିବାକୁ ପ୍ରେରଣା ଦେଉଥିଲେ । ତାଙ୍କର ସ୍ନେହ କଦାପି ଭୁଲିବାର ନୁହେଁ ।

ଏହି ମହାନ୍ ସାହିତ୍ୟ ସାଧକଙ୍କର ପ୍ରଥମ ଜୟନ୍ତୀ ଆମ ଗ୍ରାମ (ଚିଚିଣ୍ଡା)ରେ ପାଳନ କରିଥିଲି ।

କବିଙ୍କୁ ମାନପତ୍ର ଓ ଉପାୟନ ପ୍ରଦାନ କରଯାଇ-ଥିଲା । ଏଥିରେ ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ମୀନକେତନ ପୁରୋହିତ ଓ ଗଙ୍ଗାଧର ଗୁରୁ ବକ୍ତା ଭବରେ ଯୋଗ ଦେଇଥିଲେ । ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନେ ଶୁଭେଚ୍ଛା ବାର୍ତ୍ତାମାନ ପଠାଇଥିଲେ । ଅଧ୍ୟାପକ ରାଜକିଶୋର ରାୟଙ୍କ ଏକ ବାର୍ତ୍ତା ଉଦ୍ଧାର କରାଗଲା—

[ ପତ୍ରର ପ୍ରତିଲିପି ]

ବଳଗଣ୍ଡି ସାହି, ପୁରୀ
୨୬-୪-୭୬

ପ୍ରିୟ ମହାଶୟ,

ଶ୍ରୀଯୁକ୍ତ ଖଗେଶ୍ୱର ଶେଠଙ୍କ ପ୍ରଥମ ଜୟନ୍ତୀ ଉତ୍ସବ ଉପଲକ୍ଷେ ଆହୂତ ସଭରେ ଯୋଗଦେବାକୁ ନିମନ୍ତ୍ରଣ କରିଥିବାରୁ ମୁଁ କୃତଜ୍ଞତା ଅର୍ପଣ କରୁଛି ।

କାର୍ଯ୍ୟ ନିବନ୍ଧନ ଯୋଗୁଁ ମୋ ପକ୍ଷେ ଯିବା ସମ୍ଭବ ନୁହେଁ । ମୁଁ ଏ ଉତ୍ସବର ସଫଳତା କାମନା କରୁଛି । ସାହିତ୍ୟ ଏକାଡେମୀର ପ୍ରଥମ ସଂପାଦକ ଭବରେ କାର୍ଯ୍ୟ କଲାବେଳେ ଖଗେଶ୍ୱର ଗ୍ରନ୍ଥାବଳୀ ଏକାଡେମୀ ପକ୍ଷରୁ ପ୍ରକାଶ କରଯାଇ ଥିଲା । ଖଗେଶ୍ୱରଙ୍କ ସାହିତ୍ୟ ସାଧନା ଅତୁଳନୀୟ । ତାଙ୍କର ସୃଷ୍ଟି ଓ ଭବ ସମ୍ଭାର ଓଡ଼ିଆ କୃଷ୍ଟିର ସାର୍ଥକ ପ୍ରତିବିମ୍ବନ । ପଶ୍ଚିମାଞ୍ଚଳରେ ଏହି ପୂଜ୍ୟ ସାରସ୍ୱତ ସାଧକଙ୍କୁ ମୁଁ ପ୍ରଣାମ ଜଣାଉଛି ।

ରାଜ କିଶୋର ରାୟ

କବିଙ୍କର ନିଷ୍ଠାମୟ ସାରସ୍ୱତ ଜୀବନର ସୁବିମଳ ପରିଚୟ ଲାଭକରି "ଆର୍ଯ୍ୟ" ପତ୍ରିକାର ସୁଯୋଗ୍ୟ ସମ୍ପାଦକ ସ୍ୱର୍ଗତ ଶ୍ରୀବତ୍ସ ପଣ୍ଡା କବିଙ୍କୁ "ସାହିତ୍ୟ ପ୍ରାଣ" ଉପାଧି ପ୍ରଦାନ କରିଥିଲେ । ଏ ଉପାଧି ତାଙ୍କପାଇଁ ଉପଯୋଗୀ । ଦିବା ନିଶି ସାହିତ୍ୟ ଚିନ୍ତାରେ ମଗ୍ନ ରହୁଥିଲେ ସେ । ଘରେ ଖାଇବାକୁ ଦାନା ନଥିବ, ହାତରେ ପଇସାଟିଏ ନଥିବ, ଅଥଚ ସେ କବିତା ରଚନାରେ ମଗ୍ନ ରହୁଥିଲେ । ସାହିତ୍ୟ ସାଧନାରେ ତାଙ୍କର ଜୀବନ ଜ୍ୟୋତି ଉଦ୍‌ଭସିତ ହୋଇ ଉଠିଛି ।

ଏହି ନିଷ୍ଠାପର ସାହିତ୍ୟ ପ୍ରାଣ କବି 'ଓଡ଼ିଶା ସାହିତ୍ୟ ଏକାଡେମୀ', 'ହୀରାଖଣ୍ଡ-ବସନ୍ତମିଳନ', 'ସମ୍ବଲପୁର ବିଶ୍ୱବିଦ୍ୟାଳୟ' ଆଦି ବହୁ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ ।

ସମ୍ବଲପୁର ବିଶ୍ୱବିଦ୍ୟାଳୟ ପରିସରର ନାମ ତାଙ୍କ ପ୍ରସ୍ତାବରେ 'ଜ୍ୟୋତି ବିହାର" ହୋଇଛି ।

କବି ଆଜନ୍ମ ଦାରିଦ୍ର୍ୟ ନିଷ୍ପୀଡ଼ିତ । ଶେଷ ଜୀବନ ପର୍ଯ୍ୟନ୍ତ ଦାରିଦ୍ର୍ୟ ମଧ୍ୟରେ ଦିନ କାଟୁଥିଲେ । ଦାରିଦ୍ର୍ୟ ତାଙ୍କର ସହଚର ଥିଲା । ଚିର ଅଭବଗ୍ରସ୍ତ ଜୀବନରେ ଉପଯୁକ୍ତ ସ୍ଥାନର ଅଭବ ହେତୁ ବହୁ ପାଣ୍ଡୁଲିପି ଉଇ ଦ୍ୱାରା ନଷ୍ଟ ହୋଇ ଯାଇଅଛି । ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ସେ ହତାଶ ହୋଇ ନଥିଲେ । ଦୃଢ଼ ମନୋବଳ ଅସୀମ ଧୈର୍ଯ୍ୟ ଓ ପ୍ରଗାଢ଼ ପରିଶ୍ରମ ଫଳରେ ଓଡ଼ିଆ ସାହିତ୍ୟକୁ ସେ ଦେଇ-ଯାଇଛନ୍ତି ଶତାଧିକ କାବ୍ୟ କବିତା ଓ ଚଉତିଶା । ତାହାର ମାଧୁର୍ଯ୍ୟ ଜନତା ପାନ କରୁ । କବିଙ୍କ ଭଷାରେ—

'ବହି ଯା'ରେ ମୋର ଜୀବନ ଧାର
ନଈ ସମାନ,
ଥିଲେ ତୋ ମାଧୁରୀ ଜଗତ ସାର,
କରିବ ପାନ ।"

ସେ ଏକାନ୍ତ ସ୍ପଷ୍ଟବାଦୀ ଥିଲେ । ଯେତେ ସ୍ୱାର୍ଥ ହାନି ଘଟିଲେ ବି ସେ ଯଥାର୍ଥ କଥା କହିବାକୁ ଆଦୌ ପଶ୍ଚାତ୍‌ପଦ ହେଉ ନଥିଲେ । ୧୮-୨-୮୭ ରେ ଏକାଶି ବର୍ଷରେ ପାଇକମାଳ ନିକଟସ୍ଥ ଡେଙ୍ଗନାଡହି ଗ୍ରାମରେ ତାଙ୍କ ସାନ ପୁଅଙ୍କ ବାସ-ଭବନରେ କବିଙ୍କ ମୃତ୍ୟୁ ହେଲା । ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ତାଙ୍କ ସାହିତ୍ୟ ସାଧନା ଅବ୍ୟାହତ ଥିଲା ।

# ଗଙ୍ଗାଧରଙ୍କର ଦୁଇଟି ପୁସ୍ତକ-ସମୀକ୍ଷାତ୍ମକ ଗଦ୍ୟ-ରଚନା

ଦେବେନ୍ଦ୍ର କୁମାର ଦାଶ

ଗଙ୍ଗାଧରଙ୍କର ଗଦ୍ୟ ରଚନାର ପରିମାଣ ଅତ୍ୟନ୍ତ ସ୍ୱଳ୍ପ । ଏହି ସ୍ୱଳ୍ପ ସଂଖ୍ୟକ ଗଦ୍ୟ-ରଚନା ମଧ୍ୟରେ ସାହିତ୍ୟ-ଆଲୋଚନା ମୂଳକ ରଚନା ପ୍ରାୟତଃ ନାହିଁ । ଅବଶ୍ୟ ତାଙ୍କର ବିଭିନ୍ନ କାବ୍ୟର ମୁଖବଂଧରେ ତଥା ପତ୍ରାବଳୀରେ ତାଙ୍କ ସାହିତ୍ୟ-ଚିନ୍ତା ପ୍ରକାଶିତ ସେହି ସମସ୍ତଙ୍କୁ ଆଧାର କରି ଗଙ୍ଗାଧରଂକ ସାହିତ୍ୟ-ସଂପର୍କରେ ଥିବା ଧାରଣାର ଏକ ପରିଚୟ ନିଆଯାଇ ପାରିବ । ଏ ପର୍ଯ୍ୟନ୍ତ ଅବଶ୍ୟ କୌଣସି ଗବେଷକ / ସମାଲୋଚକ ଗଙ୍ଗାଧରଂକ ସାହିତ୍ୟ-ପ୍ରତ୍ୟୟ ସଂପର୍କରେ ବିଧିବଦ୍ଧ ଆଲୋଚନା କରି ପାରିନାହାନ୍ତି ।

ବଡ ଆଶ୍ଚର୍ଯ୍ୟର ବିଷୟ, ଗଂଗାଧର ତାଙ୍କ ସାହିତ୍ୟିକ ଜୀବନର ଆଦ୍ୟ ପର୍ଯ୍ୟାୟରେ ପୁସ୍ତକ-ସମାଲୋଚନାରେ ହାତ ଦେଇଛନ୍ତି— ଶଶୀଭୂଷଣ ରାୟଂକ 'ଦାକ୍ଷିଣାତ୍ୟ ଭ୍ରମଣ' ପୁସ୍ତକର ସମାଲୋଚନା ଏହାର ଦୃଷ୍ଟାନ୍ତ । ଆପଣ ଲେଖକ-ଜୀବନର ଆଦି-ପର୍ଯ୍ୟାୟରେ ଗଂଗାଧର ବିଭିନ୍ନ ପ୍ରକାର ରଚନାରେ ହାତ ଦେଇଛନ୍ତି— ନିଜ ପ୍ରତିଭା କେଉଁ ସାହିତ୍ୟ-ରୂପ ମଧ୍ୟରେ ସୁଷ୍ଠୁଭାବେ ପ୍ରକାଶ କରି ପାରିବେ, ସେଥିନେଇ ନାନା ପରୀକ୍ଷା କରିଛନ୍ତି । କୀଚକ ବଧ' ପର୍ଯ୍ୟନ୍ତ ତାଙ୍କର ସମସ୍ତ ରଚନା ନିଜର ଅଭିବ୍ୟକ୍ତି କ୍ଷମତା ସଂପର୍କରେ ଗଂଗାଧରଙ୍କ ନିଜସ୍ୱ ଏକ୍-ପେରିମେଣ୍ଟ । ଏହି ପୁସ୍ତକ ସମୀକ୍ଷାଟି 'ସମ୍ବଲପୁର ହିତୈଷିଣୀ'ର ଅଷ୍ଟମ ବର୍ଷ ଅଷ୍ଟବିଂଶ ସଂଖ୍ୟା[୯.୧୨.୧୮୯୬ ରେ ପ୍ରକାଶିତ ଏହା ବ୍ୟତୀତ ଗଙ୍ଗାଧର ପତ୍ର ଆକାରରେ ଦୀନବନ୍ଧୁ ପଟ୍ଟନାୟକଙ୍କର ତିନୋଟି ପୁସ୍ତକ : ପରିଶ୍ରମ, ଜୀବନତରଙ୍ଗ ଓ ଧର୍ମକର୍ମ ସଂପର୍କରେ ସେ ମତ ବ୍ୟକ୍ତ କରିଛନ୍ତି । ସଂପୃକ୍ତ ପତ୍ରଟି ମଧ୍ୟ ସମ୍ବଲପୁର ହିତୈଷିଣୀରେ ପ୍ରକାଶିତ ।

'ଦାକ୍ଷିଣାତ୍ୟ ଭ୍ରମଣ'ର ସମାଲୋଚନାରେ ଗଙ୍ଗାଧର ଶଶୀଭୂଷଣ ରାୟଙ୍କ ବର୍ଣ୍ଣନା ନୈପୁଣ୍ୟ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ପ୍ରକୃତି ଦର୍ଶନ ଓ ବର୍ଣ୍ଣନାରେ ଶଶିଭୂଷଣ ଯେ, ରାଧାନାଥଙ୍କର ଯୋଗ୍ୟ ଉତ୍ତରାଧିକାରୀ, ଏହା ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ଦ୍ୱିତୀୟ ରଚନାରେ [ପତ୍ରଟିରେ] କୌଣସି ଆଲୋଚନା ଭିତରକୁ ପଶି-ନାହାନ୍ତି । ତଥାପି ଗଙ୍ଗାଧରଙ୍କ ସାହିତ୍ୟ-ସୃଷ୍ଟି ବିଶ୍ଳେଷଣରେ ଏହାର ଭୂମିକାକୁ ସଂପୂର୍ଣ୍ଣ ଅସ୍ୱୀକାର କରଯାଇ ପାରିବନାହିଁ । ଏହି ବିଶ୍ୱାସରେ ଏହି ଦୁଇଟି ଗଦ୍ୟ-ରଚନାକୁ ଉଦ୍ଧାର କରଯାଉଛି ।

## (କ) ଦାକ୍ଷିଣାତ୍ୟ ଭ୍ରମଣର ସମାଲୋଚନା :

ଶ୍ରୀଯୁକ୍ତ ବାବୁ ଶଶିଭୂଷଣ ରାୟଙ୍କ ପ୍ରଣୀତ ଓ ପ୍ରକାଶିତ 'ଦାକ୍ଷିଣାତ୍ୟ ଭ୍ରମଣ' ପୁସ୍ତକ ଖଣ୍ଡିଏ ଅନୁଗ୍ରହ ଉପହାର ପାଇ ସକୃତଜ୍ଞ ଚିତ୍ତରେ ଗ୍ରହଣ କଲି, ଶଶିଭୂଷଣ ବାବୁଙ୍କର ଦକ୍ଷିଣାଞ୍ଚଳ ଭ୍ରମଣରୁ ପ୍ରତ୍ୟାବର୍ତ୍ତନ ବାର୍ତ୍ତା ଅନେକ ଦିନରୁ ଅବଗତ ହୋଇ ଭ୍ରମଣ ବୃତ୍ତାନ୍ତ ସମ୍ବାଦ ପତ୍ରରେ ପାଠ କରିବାକୁ ଅତ୍ୟନ୍ତ ଉତ୍ସୁକ ଥିଲି । ତାହା ଏକାଠି ବେଳକ୍ରେ ପୁସ୍ତକାକାରରେ ପାଇ ଅପରିମେୟ ଆନନ୍ଦ ଲଭ

କଲି । ପୁସ୍ତକର ଆଦି ପୃଷ୍ଠା ଦେଖି ଶେଷ ପର୍ଯ୍ୟନ୍ତ ପାଠ ନକରି କୌତୂହଳ ସମ୍ବରଣ କରିପାରିଲି ନାହିଁ । ପୁସ୍ତକର ରଚନା ଯେପରି ମନୋହାରିଣୀ ହୋଇଅଛି; କାଗଜ ଓ ଛାପା ତଦନୁରୂପ ସୁନ୍ଦର ହୋଇଅଛି । ଛାପାରେ ଯଦିଓ ଅତ୍ୟଳ୍ପ ଭ୍ରମ ହୋଇଥିଲା ଶୁଦ୍ଧିପତ୍ର ଦ୍ୱାରା ତାହା ନିରକୃତ ହୋଇ ଅଛି, ଯଦିଚ ଏଇ ଦୁଇସ୍ଥାନରେ ଅଶୁଦ୍ଧି ରହିଯାଇ-ଅଛି ତାହା ଶୁଦ୍ଧରୂପେ ପଢ଼ିବାକୁ ପାଠକମାନଙ୍କୁ କିଛି ଆୟାସ ଲାଗିବ ନାହିଁ । ବାବୁ ମହାଶୟ କଟକରୁ ଯାତ୍ରା କରି ଭାରତର ଦକ୍ଷିଣ ପ୍ରାନ୍ତ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ଯାଇଥିଲେ । ରାସ୍ତାରେ ମାନ୍ଦ୍ରାଜ ପ୍ରଭୃତି ଯେଉଁସବୁ ପ୍ରଧାନ ପ୍ରଧାନ ସହର ଓ ନାନାବିଧ ଦୃଶ୍ୟ ଦେଖି ଅଛନ୍ତି, ତାହା ସବୁ ସୁନ୍ଦର ଓ ବିଶଦ ରୂପେ ବର୍ଣ୍ଣିତ ହୋଇଅଛି । ଲେଖାରୁ କବିତା ଛଟା ସ୍ପଷ୍ଟରୂପେ ପ୍ରକାଶ ପାଇ-ଅଛି । ପୃଥିବୀରେ ସମସ୍ତେ ଦେଖି ଜାଣନ୍ତି ନାହିଁ, ଚର୍ମଚକ୍ଷୁର ଦର୍ଶନ ଅପେକ୍ଷା ଜ୍ଞାନ ଚକ୍ଷୁର ଦର୍ଶନ ଭିନ୍ନ ଧରଣର । ଚର୍ମ ଚକ୍ଷୁ ଓ ଜ୍ଞାନ ଚକ୍ଷୁର ଏକତାରେ ଯେଉଁମାନେ ଦେଖିପାରନ୍ତି ସେମାନଙ୍କ ମଧ୍ୟରୁ ଅନେକେ ତାହା ଦେଖେଇ ପାରନ୍ତି ନାହିଁ । ଶଶିଭୂଷଣ ବାବୁ ଆପେ ଯାହା ଦେଖିଅଛନ୍ତି ତାହା ଅନ୍ୟକୁ ଦେଖାଇବା ନିମନ୍ତେ ଅସାଧାରଣ ନୈପୁଣ୍ୟ ପ୍ରକାଶ କରିଅଛନ୍ତି । ପୁସ୍ତକ ପାଠକଲେ କବିଙ୍କ ଦର୍ଶିତ ସ୍ଥାନସବୁ ଦେଖିଲା ପରି ବୋଧହୁଏ, ଆଉ ଏକପ୍ରକାର ଆନନ୍ଦ ଅନୁଭବ ହୁଏ । ଆଉ ଗୋଟିଏ କଥା ଅଛି ଯେ; ସମସ୍ତଙ୍କ ଲେଖାରେ ସମାନ ମାଧୁର୍ଯ୍ୟ ଥାଏ ନାହିଁ । ଏହି ପୁସ୍ତକର ଲେଖା କବିବର ରାଧାନାଥ ରାୟଙ୍କର ସଂଶୋଧନ ବଳରୁ ହେଉ ଅବା ଶଶିଭୂଷଣ ବାବୁଙ୍କର ସ୍ୱକୀୟ ଲେଖିବା ଚତୁରୀରୁ ହେଉ ଶ୍ରୁତିମଧୁର ଓ ମନୋମୁଗ୍ଧକର ହୋଇଅଛି । ଦେଶାଟନରୁ ଯାହା ଯାହା ଜାଣିବାର ଆବଶ୍ୟକ ପ୍ରାୟ ତାହା ସବୁ ପୁସ୍ତକ ପାଠରୁ ଜଣା-ଯାଇଅଛି । ରେଲ ମାର୍ଗରେ ଯାତାୟତ କରିଥିବାରୁ ସେ ସକଳ ସ୍ଥାନ ଦେଖିପାରି ନାହାନ୍ତି । ଯେଉଁ ଯେଉଁ ସ୍ଥାନ ସେ ଦେଖିପାରି ନାହାନ୍ତି ଏପରି ଅନେକ ସ୍ଥାନର ଉଲ୍ଲେଖ ଯୋଗ୍ୟ ବିବରଣ ବିବୃତ କରିବାରେ ତ୍ରୁଟି କରି ନାହାନ୍ତି । ବହୁଦର୍ଶୀ ବିଜ୍ଞ-ମାନଙ୍କର କଥା କହି ନପାରେ, ମୋହୋର ସମଶ୍ରେଣୀର ପାଠକମାନେ ଏହା ପାଠକଲେ କେତେ ଗୁରୁତ୍ୱ ଶିକ୍ଷାଲାଭ କରିପାରିବେ । ରାୟ ବଂଶୀୟଙ୍କର ରଚନାରେ ଗୋଟିଏ ବିଶେଷତ୍ୱ ଅଛି ସେମାନେ ଯେତେ ରଚନା କରୁଅଛନ୍ତି ତହିଁରେ ନୂତନ ନୂତନ ଶବ୍ଦରୂପ ଅଳଙ୍କାର ଦାନରେ ଉତ୍କଳ-ଭାରତୀଙ୍କ ଶୋଭା ବର୍ଦ୍ଧନ କରୁଅଛନ୍ତି ।

ପୁସ୍ତକ ମଧ୍ୟରେ ଇଂରେଜୀ ବର୍ଣ୍ଣାନଭିଜ୍ଞ ପାଠକମାନଙ୍କ ପକ୍ଷେ ଗୋଟିଏ ଅସୁବିଧା ଦେଖିଲି କି କେତେକ ଇଂରେଜୀ ଶବ୍ଦ ଇଂରେଜୀ ଅକ୍ଷରରେ ଲେଖା ହୋଇଅଛି, ତାହା ଆଉ ଓଡ଼ିଆ ଅକ୍ଷରରେ ଲେଖାହୋଇ ନାହିଁ; ଯଥା ୫୧ ପୃଷ୍ଠାରେ "ରାଓ ମହୋଦୟ ଆଗାମୀ କଲ୍ୟ ମୋତେ ଗୋଦାବରୀର Anicwt ଏବଂ ଧବଳେଶ୍ୱର ମହାଦେବଙ୍କ ମନ୍ଦର ଏବଂ କ୍ଷୁଦ୍ର ସହର ଦେଖିଯିବାକୁ ପରାମର୍ଶ ଦେଲେ, ଏଠାରେ 'ଗୋଦାବରୀ'ର ପାଠକରି ଅଟକି ରହିବେ କିମ୍ବା ଗୋଦାବରୀର ଏବଂ ଧବଳେଶ୍ୱର ପଢ଼ିଲେ ଠିକ୍ ହେବନାହିଁ । ଗୋଦାବରୀର ଏନିକଟ (Anicwt) ଏବଂ ଧବଳେଶ୍ୱର ଏଭଳି ଲେଖା ହୋଇଥିଲେ ଉକ୍ତ ଅସୁବିଧା ରହନ୍ତା ନାହିଁ, ଏପରି ସ୍ଥଳମାନଙ୍କରେ ଇଂରଜୀ ବର୍ଣ୍ଣାନଭିଜ୍ଞ ପାଠକମାନେ ତହିଁର ଉବଗହଣରୁ ବଞ୍ଚିତ ହେବାର ସମ୍ଭାବନା ।

ଯେଉଁ ପୁସ୍ତକ ଉତ୍କଳଗୌରବ ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ମହୋଦୟଙ୍କ ଦ୍ୱାରା ସଂଶୋଧିତ ହୋଇଅଛି, ତହିଁରେ ମୋର ଏପରି କହିବାର ନିଜର ନିର୍ବୋଧତାର ପରିଚାୟକ ହୋଇପାରେ ।

ଇତି ।

**ପ୍ରାପ୍ତ ପତ୍ର :**

ପ୍ରିୟ ମହାଶୟ,

ଆପଣଙ୍କ ଅନୁଗ୍ରହ ଉପହାର ୧ ପରିଶ୍ରମ ୨ ଜୀବନ ତରଙ୍ଗ ବା ଧର୍ମ୍ମ କର୍ମ୍ମ ପୁସ୍ତକ ୨ୟ ପାଇ ଆପଣଙ୍କୁ ଧନ୍ୟବାଦର ସହିତ କୃତଜ୍ଞତା ଜ୍ଞାପନ କରୁଅଛି । ପୁସ୍ତକ ଦ୍ୱୟ ଯେପରି ଉପଦେଶ-ଗର୍ଭକ ସେହିପରି ସରଳ ପ୍ରାଞ୍ଜଳ ଭାଷାରେ ଲିଖିତ । ୨ୟ ୩ୟ ପୁସ୍ତକର ପଦ୍ୟ ଉତ୍ତମ ହୋଇଅଛି । ଏପରି ସୁପଦ୍ୟ ରଚନା ବହୁକାଳ ବ୍ୟାପିନୀ ସାଧନାର ଫଳ ବୋଲିବାକୁ ହେବ । ଗଦ୍ୟ ପାଠରେ ମୋର ପ୍ରୀତି ଲତିକା ପଲ୍ଲବିତ ହୋଇଅଛି ୧ମ ପୁସ୍ତକ (ପରିଶ୍ରମ)ର ଉପଦେଶ ସବୁ ମୂଲ୍ୟବାନ । ଆପଣ ବହୁ ପରିଶ୍ରମରେ ବହୁତ ପୁସ୍ତକରୁ ମହାଜନୋକ୍ତିମାନ ସଂଗ୍ରହ କରି ସମୟର ମୂଲ୍ୟ ଓ ପରିଶ୍ରମର ଉପକାର ପ୍ରଦର୍ଶନ କରିବା ଦ୍ୱାରା ପୁସ୍ତକର ଉପାଦେୟତା ବୃଦ୍ଧି କରି ଅଛନ୍ତି । ଏହା-ପାଠକଲେ ଯେ ସାଧାରଣଙ୍କର ଉପକାର ହେବ ଏ କଥା ମୁଁ ନିଃସନ୍ଦେହରେ କହିବାକୁ କୁଣ୍ଠିତ ନୁହେଁ । ଏହି ପୁସ୍ତକମାନ ବାଳକ ବାଳିକାମାନେ ପାଠ କରିବା ନିହାତି ଆବଶ୍ୟକ । (ଇତି)

ଆପଣଙ୍କର ଗଙ୍ଗାଧର ମେହେର

[ଏହି ପତ୍ରଟି ବ୍ୟକ୍ତିଗତ ଭାବରେ ପୁସ୍ତକ ତିନୋଟିର ଲେଖକ ଦୀନବନ୍ଧୁ ଗଡନାୟକଙ୍କ ନିକଟକୁ ଲିଖିତ ହୋଇଥିଲା । ଗଡନାୟକ ମହାଶୟ ଆପଣା ପୁସ୍ତକ ଗୁଡ଼ିକର ପ୍ରଚାର ପାଇଁ ଏହାକୁ ସମ୍ବାଦ ପତ୍ର ପୃଷ୍ଠାରେ ପ୍ରକାଶ କରିଥିଲେ । ]

ମୁଖ୍ୟ ଅଧ୍ୟାପକ,
ଓଡ଼ିଆ ବିଭାଗ,
ରାଉରକେଲା ମ୍ୟୁନିସିପାଲ୍ ମହାବିଦ୍ୟାଳୟ,
ରାଉରକେଲା - ୭୬୯୦୧୨



# ପଶ୍ଚିମ ଓଡିଶାର ଯାତ୍ରା

ଡଃ କୁମୁଦ ରଂଜନ ପାଣିଗ୍ରାହୀ

"ଯାତ୍ରା" ଲୋକଧାରାର ଏକ ପ୍ରାଚୀନ ପରମ୍ପରା ଓ ଲୋକ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ବିଭବ । ଏଥି ସହିତ ଲୋକ-ବିଶ୍ୱାସ ଓ ଧର୍ମାଚାର ଓତଃପ୍ରୋତଃ ଭାବରେ ସଂଶ୍ଳିଷ୍ଟ । ଏଣୁ,

ଲୋକଧାରାର ଏକ ସାମୂହିକ ସ୍ୱରୂପ 'ଯାତ୍ରା'ରେ ପ୍ରତିଫଳିତ ହୋଇଥାଏ ।

ଉପରୋକ୍ତ କାରଣରୁ ପଶ୍ଚିମ ଓଡ଼ିଶାର ଲୋକଂକ ଧାରଣା ଭିତରେ ଯାତ୍ରା'ର ଅନ୍ୟ ଅର୍ଥ ସ୍ଥାନ ପାଇନାହିଁ । ବଙ୍ଗଳା ଓ ଉପକୂଳବର୍ତ୍ତୀ ଓଡ଼ିଶାରେ 'ଯାତ୍ରା'କୁ ଥିଏଟର, ଅପେରା, ଲୀଳା, ସୁଆଂଗ, ଗୀତିନାଟ୍ୟ, ନାଟ୍ୟସ୍ଥଳୀ ଇତ୍ୟାଦି ଅର୍ଥରେ ଅର୍ଥରେ ଗ୍ରହଣ କରଯାଇ ଥାଏ । ଏହି ଅର୍ଥରେ ପଶ୍ଚିମ ଓଡ଼ିଶାର ଲୋକ ପ୍ରାୟତଃ 'ଯାତ୍ରା'କୁ ଗ୍ରହଣ କରଂତି ନାହିଁ ।

'ଯାତ୍ରା' ହେଉଛି; ଏକ ଭଲ ଦିନରେ (ପର୍ବ) ବହୁ ଲୋକଙ୍କ ସମାବେଶରେ (ମେଳା) ମୁଖ୍ୟ ଚରିତ୍ର ଦେବତା (ଲୋକ ଦେବାଦେବୀ, ପୌରାଣିକ ଦେବାଦେବୀ ବା ବୈଦିକ ଦେବା-ଦେବୀ) ସ୍ୱସ୍ଥାନ ତ୍ୟାଗକରି ଲୋକମାନଙ୍କର ସୁଖଦୁଃଖ, ହାରିଗୁହାରି ଶୁଣିବାପାଇଁ ଗମନ କରନ୍ତି ଏବଂ ନିଜର ଅଭିଭାବକତ୍ୱ ସଂପାଦନ କରି ପୁନଶ୍ଚ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଏହି ଦୃଷ୍ଟିରୁ, 'ଯାତ୍ରା' ଏକ ବିଶେଷ ଧରଣର ଧର୍ମୀୟ ଉତ୍ସବ । ସବୁ 'ଯାତ୍ରା' ପର୍ବ ଓ ମେଳା ହୋଇପାରିବ, ମାତ୍ର ସବୁ ପର୍ବ ବା ମେଳା 'ଯାତ୍ରା' ହୋଇ ପାରିବ ନାହିଁ । 'ଯାତ୍ରା' ବର୍ଷର ନିର୍ଦ୍ଦିଷ୍ଟ ତିଥିରେ ଅନୁଷ୍ଠିତ ହୁଏ । ଏହାର ମୂଳାଧାର ହେଉଛି ଲୋକବିଶ୍ୱାସ ଓ ଧର୍ମୀୟ ଧାରଣା । ଏହି ଧରଣର 'ଯାତ୍ରା' ସମଗ୍ର ବିଶ୍ୱର ବିଭିନ୍ନ ଅଞ୍ଚଳରେ ବହୁ ପ୍ରାଚୀନ କାଳରୁ ଅନୁଷ୍ଠିତ ହୋଇ ଆସୁଛି ।

ପଶ୍ଚିମ ଓଡ଼ିଶାରେ ଅନୁଷ୍ଠିତ ହେଉଥିବା ଯାତ୍ରା ସମୂହକୁ ପ୍ରାୟତଃ ଛ'ଅ ଭାଗରେ ବିଭକ୍ତ କରଯାଇ ପାରିବ; ଯଥା : (କ) ଯେଉଁ ଯାତ୍ରାରେ ଦେବତାଙ୍କ ପ୍ରତୀକ ଅଂଶ ଗ୍ରହଣ କରନ୍ତି, (ଖ) ଯେଉଁ ଯାତ୍ରାରେ ଦେବତାଙ୍କ ମୂର୍ତ୍ତି ଅଂଶ ଗ୍ରହଣ କରନ୍ତି, (ଗ) ଯେଉଁ ଯାତ୍ରାରେ ବରୁଆ ଅଂଶ ଗ୍ରହଣ କରନ୍ତି, (ଘ) ଯେଉଁ ଯାତ୍ରାରେ ଉଭୟ ପ୍ରତୀକ ଓ ବରୁଆ ଅଂଶ ଗ୍ରହଣ କରନ୍ତି, (ଙ) ଯେଉଁ ଯାତ୍ରାରେ ଅଭିନେତା ଅଂଶ ଗ୍ରହଣ କରନ୍ତି ଓ (ଚ) ଯେଉଁ ଯାତ୍ରାରେ ଉଭୟ ପ୍ରତୀକ ଓ ଅଭିନେତା ଅଂଶ ନେଇଥାନ୍ତି । ଏହି ବିଭାଗୀକରଣ ଯାତ୍ରାର ମୁଖ୍ୟ ଚରିତ୍ର ଦେବତାଙ୍କ 'ସ୍ୱରୂପ' ଆଧାରିତ ।

ନିମ୍ନରେ ପଶ୍ଚିମ ଓଡ଼ିଶାରେ ଅନୁଷ୍ଠିତ କେତେକ ମୁଖ୍ୟ ଯାତ୍ରାର ସୂଚନା ପ୍ରଦତ୍ତ ହେଲା ।

(କ) ଏହି ଧରଣର ଯାତ୍ରାରେ ଦେବତା ବା ଦେବୀ'ଙ୍କ ପ୍ରତୀକ, ଯଥା— ଶଲାକା, ଛତର, ଲଠି ପ୍ରଭୃତି ଅଂଶ ଗ୍ରହଣ କରନ୍ତି । ସାଧାରଣତଃ ଏହି ଦେବତାମାନେ ଲୋକ-ଦେବତା ପର୍ଯ୍ୟାୟଭୁକ୍ତ । ଏତାଦୃଶ କେତୋଟି ଲୋକପ୍ରିୟ ଯାତ୍ରା ହେଲା—

୧- କନ୍ତକୁଆଁରୀ ଯାତ୍ରା— ସୁନ୍ଦରଗଡ଼ ଜିଲ୍ଲା ଲହୁଣୀପଡା ବ୍ଲକ ଅନ୍ତର୍ଗତ ସାନକଲ-ଜଡବାହାଲ ଗ୍ରାମରେ ଅଶ୍ୱିନ ଶୁକ୍ଳପକ୍ଷ ଦ୍ୱିତୀୟାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ଦେବୀଂକ ପ୍ରତୀକ ହେଉଛି 'ସମା' । ଭୂୟାଁ ଜାତିର ପୂଜକ ଥିବାବେଳେ, ବଣାଇଁ ରଜା ଯାତ୍ରାର କର୍ତ୍ତା ଅଟନ୍ତି । 'ସମା' ଯେଉଁ ଅଞ୍ଚଳ ଦେଇ ଯାତ୍ରା କରେ, ସେହି ଅଂଚଳରେ ଭଲ ଫସଲ ହୁଏ ବୋଲି ଲୋକଙ୍କ ଧାରଣା ।

୨- କରମା ଯାତ୍ରା— ଏହି ଯାତ୍ରା ପଶ୍ଚିମ ଓଡ଼ିଶାରେ ଅନେକତ୍ର ଅନୁଷ୍ଠିତ ହୋଇଥାଏ । ସାଧାରଣତଃ କାର୍ତ୍ତିକ ମାସରେ ତିନି ଥରେ ଏହା ପାଳିତ ହୁଏ । ଦେବତାଙ୍କ ନାମ କରମସାନୀ ଏବଂ କରମା ଗଛର ଡାଳ ହେଉଛି ତାଙ୍କର ପ୍ରତୀକ ।

୩- କୁନ୍ଦାଦେଓ ଯାତ୍ରା—ଏହା ଗଣ୍ଡ ଜାତୀର ଏକ ବିଶିଷ୍ଟ ଯାତ୍ରା । ବଲାଙ୍ଗିର ଜିଲ୍ଲା ଅନ୍ତର୍ଗତ ଲୋଇସିଂହାରେ ଏହା ଅନୁଷ୍ଠିତ ହୁଏ । ସୁନ୍ଦରଗଡ

ଜିଲ୍ଲା ଓ କୁଚିଣ୍ଡା ଅଞ୍ଚଳରେ ଏହି ଯାତ୍ରାର ନାମ ହେଉଛି 'ଜଂଗାଲିଂଗା' ଯାତ୍ରା । ଏହା ମାର୍ଗଶୀର ମାସରେ ପାଳିତ ହୁଏ ଏବଂ ଦୁଇଟି ବଡବଡ କାଠ ଗଣ୍ଡି ହେଉଛି ଦେବତାଙ୍କ ପ୍ରତୀକ ।

୪- ଚୁଡାଖାଇ ଯାତ୍ରା— ଏହି ଯାତ୍ରା ବଉଦ ଓ ସୋନପୁର ଅଞ୍ଚଳରେ ଅଧିକ ମାତ୍ରାରେ ପାଳିତ ହୁଏ । କଳସ ଓ ଛତ୍ର ହେଉଛି ପ୍ରତୀକ । ଏହି ଯାତ୍ରା ଅବସରରେ ଅଶ୍ଳୀଳ ଭଷାର ପ୍ରୟୋଗ କୁଣ୍ଠାହୀନ ଭବରେ କରଯାଏ । ମାର୍ଗଶୀର ମାସର ଶେଷ ଗୁରୁବାରରୁ ପୌଷ ପ୍ରଥମ ଗୁରୁବାର ପର୍ଯ୍ୟନ୍ତ ଯାତ୍ରା ହୁଏ । ୧୦/୧୨ ଖଣ୍ଡ ଗ୍ରାମ ଯାତ୍ରାର ମଂଚ ରୂପରେ ଗୃହୀତ ହୋଇଥାଏ ।

୫- ଛତର ଯାତ୍ରା— ଭବାନୀପାଟଣାର ଲୋକପ୍ରିୟ ଯାତ୍ରା । ଦେବୀ ହେଉଛନ୍ତି ମାଣିକେଶ୍ୱରୀ ଏବଂ ତାଙ୍କର ପ୍ରତୀକ ହେଉଛି; ଛତର; ଏଣୁ ଯାତ୍ରାର ନାମ ଏହିଭଳି ହୋଇଛି । ଆଶ୍ୱିନ ମାସରେ ଏହା ଅନୁଷ୍ଠିତ ହୁଏ ।

୬- ଡୋକରୀ ବୁଢ଼ୀ ଯାତ୍ରା— କଳାହାଣ୍ଡି ଜିଲ୍ଲାନ୍ତର୍ଗତ ତାଳଗୁଡଗ୍ରାମରେ ଏହି ଯାତ୍ରା ଅନୁଷ୍ଠିତ ହୁଏ । ଦେବୀଙ୍କ ନାମ ଡୋକରୀବୁଢ଼ୀ ଓ ତାଙ୍କର ପ୍ରତୀକ ହେଉଛି ଲଠି । ଆଶ୍ୱିନ ଶୁକ୍ଳ ଅଷ୍ଟମୀରେ ଏହା ଅନୁଷ୍ଠିତ ହୁଏ ।

୭- ବୁଢାରଜା ଯାତ୍ରା— ବରଗଡ ଜିଲ୍ଲା ଅନ୍ତର୍ଗତ ପପଙ୍ଗା ଓ ବୁସୁଡା ଗ୍ରାମରେ ଏହି ଯାତ୍ରା ଚୈତ୍ର ଶୁକ୍ଳପକ୍ଷ ଦଶମୀରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ବୁଢାରଜା ଦେବତା ଓ କ୍ଷେତ୍ରପାଳ ଦେବୀଙ୍କର ବିବାହୋତ୍ସବକୁ ନେଇ ଏଇ ଯାତ୍ରା ଅନୁଷ୍ଠିତ ହୋଇଥାଏ ।

ଲୋକ ଦେବତା ଅଂଶଗ୍ରହଣ କରୁଥିବା ଉପରୋକ୍ତ ଯାତ୍ରା ସମୂହରେ ଏବଂ ଏତାଦୃଶ ସମସ୍ତ ଯାତ୍ରାରେ, ସାଧାରଣତଃ ବଳି ପ୍ରଦାନ କରଯାଏ । ବଳି ପ୍ରଦାନ ଜଘନ୍ୟ ମନେହେଲେ ମଧ୍ୟ ଏହି ଦୃଶ୍ୟକୁ ବିଶେଷ ଆଗ୍ରହର ସହିତ ଆବାଳବୃଦ୍ଧ-ବନିତା ଦେଖିଥାନ୍ତି ସେମାନଙ୍କ ମନରେ କୌଣସି ବିକାର ନଥାଏ । ଜୀବ ହତ୍ୟା ସଂପର୍କୀୟ ସେଭଳି କୌଣସି ପୌରାଣିକ ଧାରଣା ଦ୍ୱାର ସେମାନେ ପ୍ରଭବିତ ନହୋଇ, ଦେବତାଙ୍କୁ ଅର୍ପଣ କରଯାଉ-ଥିବା ଉପହାର ବା ପ୍ରସାଦ ଭବରେ ବଳିକୁ ଗ୍ରହଣ କରିଥାନ୍ତି ।

(ଖ) ଏହି ଶ୍ରେଣୀର ଯାତ୍ରାରେ ମୂର୍ତ୍ତି ମୁଖ୍ୟ ଅଂଶ ଗ୍ରହଣ କରନ୍ତି ଏବଂ ପୌରାଣିକ ଦେବତା ମାନେହିଁ ମୁଖ୍ୟ ଚରିତ୍ର ରୂପେ ଅବତୀର୍ଣ୍ଣ ହୋଇ-ଥାନ୍ତି । ଏତାଦୃଶ କେତୋଟି ଲୋକପ୍ରିୟ ଯାତ୍ରା ହେଉଛି—

୧- ଢୋର ଯାତ୍ରା ବା ବାଲି ଯାତ୍ରା— ଏହି ଯାତ୍ରା ଆଶ୍ୱିନ ପୂର୍ଣ୍ଣିମାରୁ ଆରମ୍ଭ ହୋଇ କାର୍ତ୍ତିକ ପୂର୍ଣ୍ଣିମାର ପରଦିନ ସମାପ୍ତ ହୁଏ । ମୁଖ୍ୟ ଚରିତ୍ର ହେଉଛନ୍ତି ଶିବ ଓ କୃଷ୍ଣ । ଢୋର (ନଈ) ବାଲିରେ ଶିବ ଲିଙ୍ଗ ନିର୍ମାଣ କରଯାଏ ଏବଂ ପ୍ରତ୍ୟହ ଲୋକେ ଲିଙ୍ଗ ଉପରେ ବାଲି ପକାଇଥାନ୍ତି । ଫଳସ୍ୱରୂପ ଏକ ବିରାଟ ବାଲୁକା ଲିଙ୍ଗ ନିର୍ମିତ ହୋଇଯାଏ । ଗ୍ରାମରୁ କୃଷ୍ଣଙ୍କ ମୂର୍ତ୍ତି ଆସନ୍ତି ଏବଂ ହରିହର ଭେଟ ହୁଏ ।

୨- ଦୋଳଯାତ୍ରା— ଏହା ଏକ ସର୍ବ-ଭରତୀୟ ଯାତ୍ରା । ଫାଲ୍‌ଗୁନ ପୂର୍ଣ୍ଣିମା ଦିନ ରାଧା ଓ କୃଷ୍ଣଙ୍କ ମୂର୍ତ୍ତି ବିମାନରେ ବସି ଯାତ୍ରା କରନ୍ତି ।

୩- ନାଗେନ୍ ଯାତ୍ରା— ପୁରାଣରେ ନାଗ ଦେବତାଙ୍କ ସଂପର୍କରେ ବହୁ ବର୍ଣ୍ଣନା ଅଛି । ନାଗ-ନାଗୁଣୀଙ୍କ ବିବାହୋତ୍ସବକୁ ଯାତ୍ରା ଶୈଳୀରେ ପାଳନ କରଯାଏ । କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ

କିମ୍ବା ଅଁଳା ସପ୍ତମୀରେ ଏହିଯାତ୍ରା ଅନୁଷ୍ଠିତ ହୁଏ ।

୪- ମକର ଯାତ୍ରା— ମାଘ ମାସ ମକର ସଂକ୍ରାନ୍ତ ଦିନ ଏହି ଯାତ୍ରା ଅନୁଷ୍ଠିତ ହୁଏ । ଶିବ ଓ କୃଷ୍ଣ ହେଉଛନ୍ତି ମୁଖ୍ୟ ଚରିତ୍ର । ଉଭୟଙ୍କ ମୂର୍ତ୍ତି ଦୁଇଟି ରଥରେ ଯାତ୍ରା କରନ୍ତି ଏବଂ ସାକ୍ଷାତ କରି ମକର ବସାନ୍ତି । ସମ୍ବଲପୁର ନିକଟସ୍ଥ 'ଠେମେରା' ଗ୍ରାମରେ ମହାସମାରୋହରେ ଏହି ଯାତ୍ରା ପାଳିତ ହୁଏ । ଏହି ଅବସରରେ ମକର ଚାଉଳ ପ୍ରସ୍ତୁତ କରାଯାଏ ଏବଂ ଲୋକେ ମଧ୍ୟ 'ମକର' ବସିଥାନ୍ତି ।

୫- ରଥ ଯାତ୍ରା— ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥଯାତ୍ରା ତଥା ବାହୁଡା ଯାତ୍ରା ସମଗ୍ର ଓଡ଼ିଶାରେ ଲୋକପ୍ରିୟ । ପଶ୍ଚିମ ଓଡ଼ିଶାର ଅଧିକାଂଶ ଗ୍ରାମରେ ଏହି ଯାତ୍ରା ଅନୁଷ୍ଠିତ ହୁଏ ।

୬- ଶୀତଳ ଷଷ୍ଠୀ ଯାତ୍ରା – ପଶ୍ଚିମ ଓଡ଼ିଶାର ସମ୍ବଲପୁର ଓ ବରପାଲି ଠାରେ ଏହି ଯାତ୍ରା ମହାସମାରୋହରେ ଅନୁଷ୍ଠିତ ହୁଏ । ଶିବ ଓ ପାର୍ବତୀଙ୍କ ବିବାହୋତ୍ସବ ଏହାର ମୂଳ ବିଷୟ । ଏତାଦୃଶ ଯାତ୍ରାରେ ବଳି ପ୍ରଦାନ କରାଯାଏ ନାହିଁ ।

(ଗ) ଏହି ପ୍ରକାରର ଯାତ୍ରାରେ ସାଧାରଣତଃ ଲୋକଦେବତା ଜଣେ 'ବରୁଆ' ଦେହରେ ପ୍ରବେଶ କରି ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରନ୍ତି । ଏତାଦୃଶ ଯାତ୍ରା ପଶ୍ଚିମ ଓଡ଼ିଶାର ଅଧିକାଂଶ ଅଞ୍ଚଳରେ ଓ ଅଧିକ ପରିମାଣରେ ଅନୁଷ୍ଠିତ ହୋଇଥାଏ । ଲୋକମାନଙ୍କ ସହିତ ଦେବତାଙ୍କ ପ୍ରତ୍ୟକ୍ଷ ସମ୍ବନ୍ଧ ସ୍ଥାପିତ ହୋଇଥିବାରୁ, ଏଭଳି ଯାତ୍ରା ଲୋକଙ୍କର ଅଧିକ ପ୍ରିୟ । ଏଭଳି କେତୋଟି ଲୋକପ୍ରିୟ ଯାତ୍ରା ହେଉଛି—

୧- କଣାଁ ଭଏଁରେ ଯାତ୍ରା— ନୂଆପଡା ନିକଟସ୍ଥ ତନୱାଟ ଗ୍ରାମରୁ ଏହା ଆରମ୍ଭ ହୋଇ ନୂଆପଡା ପର୍ଯ୍ୟନ୍ତ ବିସ୍ତୃତ ମଞ୍ଚରେ ଅନୁଷ୍ଠିତ ହୁଏ । ଦେବତାଙ୍କ ନାମାନୁସାରେ ଏହି ଯାତ୍ରା ନାମିତ । କନ୍ଧ ଜାତିର ଲୋକ-ଦେବତା ହେଲେ ମଧ୍ୟ, ଏହି ଦେବତା ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଥାନ୍ତି ।

୨- କମ୍‌ଗେଇ ଯାତ୍ରା— ବରଗଡ ଜିଲ୍ଲା ଭଟଲି ନିକଟସ୍ଥ କମ୍‌ଗାଁର ଗ୍ରାମଦେବୀ ହେଉଛନ୍ତି 'କମଗେଇ' ଯେ ଆଶ୍ୱିନ ପୂର୍ଣ୍ଣିମା ଦିନ 'ବରୁଆ' ଶରୀରରେ ପ୍ରବେଶ କରି ଲୋକଙ୍କ ହାରିଗୁହାରି ପ୍ରତିକାରର ବ୍ୟବସ୍ଥା କରିଥାନ୍ତି ।

୩- ଘଣ୍ଟାଶୁଣୀ ଯାତ୍ରା— ବଲାଙ୍ଗିର ଜିଲ୍ଲା ଅନ୍ତର୍ଗତ ଟିଟିଲାଗଡରେ ଏହି ଯାତ୍ରା ଅନୁଷ୍ଠିତ ହୋଇଥାଏ । ସମୟ ହେଉଛି ଆଶ୍ୱିନ ମାସ ଶୁକ୍ଳ ନବମୀ ।

୪- ଘସିଏନ ଯାତ୍ର - ବଲାଙ୍ଗିର ସହର ନିକଟବର୍ତ୍ତୀ ଚନ୍ଦନଭାଟୀ ଗ୍ରାମରେ ଗ୍ରାମଦେବୀ 'ଘସିଏନ' ଙ୍କ ଯାତ୍ରା ଅନୁଷ୍ଠିତ ହୁଏ । ଏହି ଦେବୀଙ୍କ ବିଶେଷତ୍ୱ ହେଉଛି, ଗ୍ରାମର ଶ୍ରେଷ୍ଠ ଦେବୀ ହେଲେ ହେଁ ସେ ନିମ୍ନ ଜାତିର ଘଟଫେଇ କାମ କରନ୍ତି ।

୫- ଚରଦେଇ ଯାତ୍ରା— ବିନିକା ନିକଟସ୍ଥ 'ଚରଦା' ଗ୍ରାମରେ ମୁଖ୍ୟ ଦେବୀ ଚରଦେଇଙ୍କ ଯାତ୍ରା କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଅନୁଷ୍ଠିତ ହୋଇଥାଏ ।

୬- ଜଡେନ୍ ବା ମହୁଲପୁଡା ଯାତ୍ରା— ବଲାଙ୍ଗିର ଜିଲ୍ଲାନ୍ତର୍ଗତ ରେଢୋତରା ଗ୍ରାମରେ ଜଡେନ ଦେବତାଙ୍କ ଯାତ୍ରା ହୁଏ । ଏହି ଯାତ୍ରା କନ୍ଧବହୁଳ ଅଂଚଳରେ ପାଳିତ ହୋଇଥାଏ । ଯାତ୍ରାର ସମାପ୍ତି ପରେ ହିଁ ମହୁଲକୁ ଖାଦ୍ୟ ରୂପେ ଗ୍ରହଣ କରାଯାଏ ।

୭- ଦ୍ୱାରସେନ୍ନୀ ଯାତ୍ରା — ବଲାଙ୍ଗିର ଜିଲ୍ଲାର ସିନ୍ଧେକେଲା ଗ୍ରାମରେ ଏହି ଯାତ୍ରା ମହା

ସମାଗେହରେ ଅନୁଷ୍ଠିତ ହୁଏ । କଳାହାଣ୍ଡି ଜିଲ୍ଲାର କେତେକ ଅଞ୍ଚଳରେ ମଧ୍ୟ ଏହି ଦେବୀଙ୍କ ଯାତ୍ରା ହୁଏ । ଦ୍ୱାରସେହ୍ନି କୁ ଲଙ୍କେଶ୍ୱରୀ ଭବରେ ଚିହ୍ନିତ କରଯାଇ ଥାଏ । ଏହି ଯାତ୍ରାରେ ବୁଢ଼ାରଜା ଓ ଦ୍ୱାରସେହ୍ନୀଙ୍କ ବିବାହୋତ୍ସବ ହେଉଛି ଗୋଟିଏ ଅଂଶ ।

୮— ପାଟଣେଶ୍ୱରୀ ଯାତ୍ର—ବଲାଙ୍ଗିର ଜିଲ୍ଲା ଅନ୍ତର୍ଗତ ପାଟଣ ଗଡରେ ଏହି ଯାତ୍ରା ଅନୁଷ୍ଠିତ ହୁଏ । ପାଟଣା ରଜ୍ୟର ମୁଖ୍ୟଦେବୀ ପାଟଣେଶ୍ୱରୀ ଓ ତାଙ୍କର ଭଗିନୀ ସମଲେଶ୍ୱରୀ ଏହି ଯାତ୍ରାରେ ମୁଖ୍ୟ ଅଂଶ ଗ୍ରହଣ କରନ୍ତି ।

୯- ବଏଲ ଯାତ୍ରା— ସୋନପୁରରେ ମୁଖ୍ୟ ଦେବୀ ସୁରେଶ୍ୱରୀ ଏହି ଯାତ୍ରାର ମୁଖ୍ୟ ଚରିତ୍ର । ଆଶ୍ୱିନ ମାସରେ ଏହା ଅନୁଷ୍ଠିତ ହୁଏ ।

୧୦- ବସ୍ତେନ ଯାତ୍ରା— ବସ୍ତେନ ଦେବୀ ବସ୍ତର ରଜ୍ୟରୁ ଅତିଥି ଭବରେ ଆସି ପାଟଣା ରଜ୍ୟର ପ୍ରତ୍ୟେକ ଗ୍ରାମରେ ପୂଜା ପାଇଥାନ୍ତି । ତାଙ୍କୁ ନେଇ କେତେକ ଗ୍ରାମରେ ଯାତ୍ରା ଅନୁଷ୍ଠିତ ହୋଇଥାଏ ।

୧୧- ବାରପାହାଡ ଯାତ୍ରା—ସୁବର୍ଣ୍ଣପୁର ଜିଲ୍ଲା ଅନ୍ତର୍ଗତ କୁଦୋପାଲି ଗ୍ରାମରେ ଏହି ଯାତ୍ରା ଅନୁଷ୍ଠିତ ହୁଏ । ସମୟ ହେଉଛି ଚୈତ୍ର ଶୁକ୍ଳପକ୍ଷ ତ୍ରୟୋଦଶୀ ।

୧୨- ବୁଢ଼ା ଡଙ୍ଗର ଯାତ୍ରା— ବଲାଙ୍ଗିର ନିକଟସ୍ଥ ଗିରୀଶ ଗ୍ରାମରେ ଏହି ଯାତ୍ରା ଆଶ୍ୱିନ ଶୁକ୍ଳ ଚତୁର୍ଦ୍ଦଶୀ ଓ ପୂର୍ଣ୍ଣିମା ଦିନ ଅନୁଷ୍ଠିତ ହୁଏ । ପାହାଡ ଓ ଡଂଗରକୁ ଦେବତା ଭବରେ ଗ୍ରହଣ କରିବାର ଲୌକିକ ପରଂପର ଏଠାରେ ସୂଚିତ ହୁଏ ।

୧୩- ଭୀମା ଯାତ୍ରା— କଳାହାଣ୍ଡି ଜିଲ୍ଲାର କାପ୍ସି ଗ୍ରାମରେ ଅନୁଷ୍ଠିତ ହୁଏ । ସମ୍ବଲପୁର ଓ ବଲାଙ୍ଗିର ଜିଲ୍ଲାର ଅନେକ ସ୍ଥାନରେ ମଧ୍ୟ ଆଷାଢ଼ ମାସରେ ବର୍ଷା ନହେଲେ ଏହି ଯାତ୍ରା ଅନୁଷ୍ଠିତ ହୋଇଥାଏ । ଯାତ୍ରାର ମୁଖ୍ୟ ଦେବତା 'ଭୀମା' ବର୍ଷା କରିବାକୁ ଇନ୍ଦ୍ରଙ୍କୁ ବାଧ୍ୟ କରନ୍ତି ।

୧୪- ମାଡେନ୍ ଯାତ୍ରା— ପଶ୍ଚିମ ଓଡ଼ଶାର ପ୍ରତ୍ୟେକ ଗ୍ରାମରେ ପୂର୍ବେ ଏହି ଯାତ୍ରା ଅନୁଷ୍ଠିତ ହେଉଥିଲା; ମାତ୍ର ସଂପ୍ରତି କେତେକ ଗ୍ରାମରେ ଏହା ପ୍ରଚଳିତ । ଧାନ ଅମଳ ସମୟରେ ଗ୍ରାମଦେବତା ଏବଂ ଖଳାର ଦେବୀଙ୍କୁ ପୂଜା କରଯାଇ ଏହି ଯାତ୍ରା କରଯାଇ ଥାଏ ।

୧୫- ଲଂକେଶ୍ୱରୀ ଯାତ୍ରା— ସୋନପୁର, ଟିଟିଲାଗଡ ପ୍ରଭୃତି କେତେକ ସ୍ଥାନରେ ଅନୁଷ୍ଠିତ ହୋଇଥାଏ । ଏହି ଦେବୀ ଅସୁର ରଜା ରବଣର ଦ୍ୱାରପାଳ ଥିଲେ ଏବଂ ହନୁମାନ କର୍ତ୍ତୃକ ଅପମାନିତ ହୋଇ ଲଙ୍କାଗଡ ତ୍ୟାଗ କରିଥିଲେ । ତାଙ୍କର ଯାତ୍ରା ମଧ୍ୟ ଆଶ୍ୱିନ ମାସ ଶୁକ୍ଳ ଦଶମୀରେ ଅନୁଷ୍ଠିତ ହୋଇଥାଏ ।

୧୬- ସମଲେଇ ଯାତ୍ରା— ବଲାଙ୍ଗିରର ପାଟଣାଗଡ, ତୁଷୁର ଓ ସମ୍ବଲପୁରର କୁଲାବିର ଓ ଝିର୍‌ଲପାଲି ଗ୍ରାମରେ ମହାସମାଗେହରେ ଅନୁଷ୍ଠିତ ହୁଏ । ସମ୍ବଲପୁରରେ ଦେବୀଙ୍କ ପୂଜା ହେଉଥିଲେ ହେ ସଂପ୍ରତି 'ଯାତ୍ରା' ହେଉନାହିଁ ।

୧୭- କଳସୀ ଯାତ୍ରା— ପଶ୍ଚିମ ଓଡ଼ଶାର ଅନେକତ୍ର ଶିବ ମନ୍ଦର ଥିବା ଗ୍ରାମରେ ଏହି ଯାତ୍ରା ଅନୁଷ୍ଠିତ ହେଉଥିଲେ ହେଁ ସୁବର୍ଣ୍ଣପୁର ଜିଲ୍ଲାନ୍ତର୍ଗତ ଚର୍ଦ୍ଦା ଗ୍ରାମରେ ଏହା ମହାସମାଗେହରେ ପାଳିତ ହୋଇଥାଏ । ବିଭିନ୍ନ ଗ୍ରାମରୁ ଦେବୀମାନେ ଶୂନ୍ୟ କଳସୀ ଆଣି ଶିବଙ୍କୁ ପାଦୁକାରେ କଳସୀ ପୂର୍ଣ୍ଣ କରନ୍ତି ଏବଂ ତାକୁ ସ୍ୱଗ୍ରାମକୁ ନେଇସାରିବା ପରେ

ନିଜ ନିଜର ଯାତ୍ରା ଆରମ୍ଭ କରନ୍ତି । 'କଳସୀ' ଯାତ୍ରାର ମୁଖ୍ୟ ଚରିତ୍ର ହୋଇଥିବାରୁ ଏହି ଯାତ୍ରାକୁ 'କଳସୀ ଯାତ୍ରା' କୁହାଯାଏ ।

୧୮- କନ୍ଧେନ ବୁଢ଼ୀ ଯାତ୍ରା — ଏହି ଯାତ୍ରାକୁ 'ପୋଢ଼ମର ଯାତ୍ରା' ବୋଲି ମଧ୍ୟ କୁହାଯାଏ । ଏହା କନ୍ଧମାନଙ୍କର ଜାତିର ଦେବୀଙ୍କର ଯାତ୍ରା । ପୋଢ଼ ବଳି ଏହାର ମୁଖ୍ୟ ଦୃଶ୍ୟ । ପୋଢ଼ ରକ୍ତ ଜମିରେ ପଡ଼ିଲେ ଜମି ଉର୍ବର ହେବାର ପାରଂପରିକ ବିଶ୍ୱାସ ଉପରେ ଏହି ଯାତ୍ରା ଆଧାରିତ ।

୧୯- ପାଟ ଯାତ୍ରା — କଳାହାଣ୍ଡି ଜିଲ୍ଲାନ୍ତର୍ଗତ ଲୁହାବାହାଲ ଓ ବାନେର ଗ୍ରାମରେ ଏହି ଯାତ୍ରା ଅନୁଷ୍ଠିତ ହୋଇ ଥାଏ । ଏହି ଯାତ୍ରାର ବିଶେଷତ୍ୱ ହେଉଛି ଯେ, ଏହା ୩୦/୩୫ ବର୍ଷରେ ମାଘ ମାସରେ ପାଳିତ ହୁଏ । ଏହି ଯାତ୍ରାର ମୁଖ୍ୟ ଚରିତ୍ର ହେଉଛନ୍ତି 'ଲଣ୍ଡାଘର' ନାମକ ଏକ ଲୋକ-ଦେବତା ।

୨୦- ପାଟଖଣ୍ଡା ଯାତ୍ରା— ବଲାଙ୍ଗିର ଜିଲ୍ଲା ଅନ୍ତର୍ଗତ ଜରସିଂହା ଗ୍ରାମରେ ଏହି ଯାତ୍ରା ଅନୁଷ୍ଠିତ ହୁଏ । 'ପାଟଖଣ୍ଡା' ହେଉଛନ୍ତି ମୁଖ୍ୟ ଚରିତ୍ର । ପାଟଣା ଗଡରୁ ପାଟଣେଶ୍ୱରୀଙ୍କର ପାଟ ଓ ସମଲେଶ୍ୱରୀଙ୍କର ସିନ୍ଦୁର ଆସିବା ପରେ ହିଁ ଏହି ଯାତ୍ରା ଆରମ୍ଭ ହୋଇଥାଏ । ଯାତ୍ରା ଅବସରରେ ପାଟଖଣ୍ଡା ଦେବତା (ବରୁଆ) ବନ୍ଧ୍ୟା ଦଂପତିଙ୍କୁ ସନ୍ତାନ (ଫଳ) ଦାନ କରନ୍ତି ଓ ପାଗଳ ମାନଙ୍କୁ ଆରୋଗ୍ୟ କରନ୍ତି ।

୨୧- ମାହେଶ୍ୱରୀ ଓ ଖରେଶ୍ୱରୀ ଯାତ୍ରା— ଏହା ଡୁମାଲ ଜାତୀର ମୁଖ୍ୟ ଯାତ୍ରା । ବରଗଡ ନିକଟବର୍ତ୍ତୀ 'କୁରୁଆଁ', ବଲାଙ୍ଗିର ନିକଟସ୍ଥ କିଉ-ବାହାଲ, ସୁବର୍ଣ୍ଣପୁର ନିକଟସ୍ଥ ଅରିଗାଁ ପ୍ରଭୃତି ଗ୍ରାମରେ ଏହି ଯାତ୍ରା ମହାସମାରୋହରେ ପାଳିତ ହୁଏ । ଏହି ଯାତ୍ରା ଆଶ୍ୱିନ ମାସ ଶୁକ୍ଳ ନବମୀରେ ସମାପ୍ତ ହୁଏ ଏବଂ ଏହି ଦିନ ଡୁମାଲମାନେ ନବାନ୍ନ ଭକ୍ଷଣ କରନ୍ତି ।

୨୨- ବାଲିଯାତ୍ରା— ଏହି ଯାତ୍ରା କଳାହାଣ୍ଡି ଜିଲ୍ଲାନ୍ତର୍ଗତ ଲୁହାବାହାଲ ଠାରେ ଅନୁଷ୍ଠିତ ହୁଏ । ଏଠାରେ ବାଲି 'କନ୍ୟା' ଅର୍ଥରେ ଗ୍ରହଣ କରା-ଯାଇଛି । 'ରେଡ୍‌ମେଁ' ଦେବୀ ହେଉଛନ୍ତି କନ୍ୟା ଓ ତାଙ୍କର ବିବାହ 'ଭୀମା' ଦେବତାଙ୍କ ସହିତ ଅନୁଷ୍ଠିତ ହୋଇଥାଏ । ଏହି ନାମରେ ଆଉ ଏକ ପ୍ରକାରର ଯାତ୍ରା ପଶ୍ଚିମ ଓଡଶାରେ ଅନୁଷ୍ଠିତ ହୋଇଥାଏ । ଏହି ପ୍ରକାରର ଯାତ୍ରାକୁ 'ଢୋରଯାତ୍ରା' ବୋଲି ମଧ୍ୟ କହନ୍ତି । ନଦୀ ବାଲିରେ ଶିବଲିଙ୍ଗ ସ୍ଥାପିତ ହୁଏ ଏବଂ ପ୍ରତ୍ୟେକ ଗ୍ରାମବାସୀ ଏହି ଲିଙ୍ଗ ଉପରେ ବାଲି ପକାଇଥାନ୍ତି । ଗ୍ରାମରୁ କୃଷ୍ଣ ମୂର୍ତ୍ତିକୁ ଯାତ୍ରାରେ ଅଣାଯାଏ ଏବଂ ବାଲିଲିଂଗ (ସ୍ତୁପ) ଠାରେ ଉତ୍ସବ ପାଳିତ ହୁଏ ।

୨୩- ଗୋଷ୍ଠରଣ ଯାତ୍ରା— ଏହି ଯାତ୍ରା ସୁବର୍ଣ୍ଣପୁର ଜିଲ୍ଲାନ୍ତର୍ଗତ 'ମେଣ୍ଡା' ଗ୍ରାମରେ ଅନୁଷ୍ଠିତ ହୁଏ । ବୈଶାଖ ଶୁକ୍ଳ ତୃତୀୟା ଠାରୁ ଷରିଦିନ ପର୍ଯ୍ୟନ୍ତ ଯାତ୍ରା ହୋଇଥାଏ । ବଳରାମ, କୃଷ୍ଣ, ଯଶୋଦା ପ୍ରଭୃତି ଚରିତ୍ରର ଭୂମିକାରେ ଅଭିନେତା ମାନେ ଅବତୀର୍ଣ୍ଣ ହୁଅନ୍ତି । ଗ୍ରାମ ପାଖରେ ଥିବା ଜଙ୍ଗଲ ଓ ନଦୀ ପ୍ରଭୃତି ଯାତ୍ରାର ମଞ୍ଚ ରୂପେ ବ୍ୟବହୃତ ହୁଏ ।

୨୪- ଧନୁଯାତ୍ରା— ବରଗଡ ଜିଲ୍ଲାର ସଦର ମହକୁମା ଓ ଚିଚିଣ୍ଡାରେ ଏହି ଯାତ୍ରା ମହାସମା-ରୋହରେ ପାଳିତ ହୁଏ । 'ଗୋପଲୀଳା'ର କଥାବସ୍ତୁକୁ ଯାତ୍ରା ଶୈଳୀରେ ଅଭିନୟ କରିବାର ଏହି ସୁନ୍ଦର ପରଂପରା ଅନ୍ୟତ୍ର ବିରଳ ।

୨୫- ଦଣ୍ଡ ଯାତ୍ରା— ପଶ୍ଚିମ ଓଡ଼ଶାର ବ୍ୟାପକ ଅଞ୍ଚଳରେ ଏହି ଯାତ୍ରା ଅନୁଷ୍ଠିତ ହୋଇ-ଥାଏ । ଫାଲଗୁନ କୃଷ୍ଣପକ୍ଷ ପ୍ରତିପଦାରୁ ଯେକୌଣସି ଏକ, ସାତ, ତେର ଦିନରୁ ଆରମ୍ଭ ହୋଇ ବିଷୁବ ସଂକ୍ରାନ୍ତିରେ ଯାତ୍ରା ସମାପ୍ତ ହୁଏ । ଶୈବ ଓ ଶାକ୍ତ ଧର୍ମର ସମ୍ମିଳିତ ସ୍ୱରୂପ ଏଥିରେ ପ୍ରକଟିତ । ଦଣ୍ଡ ଯାତ୍ରା ସହିତ ସଂପୃକ୍ତ 'ଲୀଳା' ସାଧାରଣରେ ଲୋକପ୍ରିୟ ।

ଉପରୋକ୍ତ ଯାତ୍ରା ବ୍ୟତୀତ ଆହୁରି ଅନେକ ଯାତ୍ରା ବିଭିନ୍ନ ପୁରପଲ୍ଲୀରେ ଅନୁଷ୍ଠିତ ହୋଇଥାଏ । ଲୋକ ଦେବତାଂକୁ ନେଇ ହେଉଥିବା ଯାତ୍ରାର ମୁଖ୍ୟ ଚରିତ୍ରମାନେ ବିଭିନ୍ନ ନାମଧାରୀ ହୋଇଥିବା ବେଳେ ପୌରାଣିକ ଦେବତା କୈନ୍ଦ୍ରିକ ଯାତ୍ରାର ଚରିତ୍ରମାନଙ୍କ ନାମରେ ତାହା ପରିଲକ୍ଷିତ ହୁଏ ନାହିଁ । କାରଣ, ଅସଂଖ୍ୟ ଲୋକଦେବତା କ୍ଷେତ୍ରୀୟ ବୈଶିଷ୍ଟ୍ୟ ସହିତ ବିଭିନ୍ନ ସୀମିତ ଅଂଚଳର ଲୋକଙ୍କର ଆଶା ଆକାଂକ୍ଷାର ପରିପୂର୍ତ୍ତି ନିମିତ୍ତ ଯାତ୍ରା ଅନୁଷ୍ଠିତ ହୋଇଥାଏ । ଏଣୁ, ବହୁ ଯାତ୍ରାର ତାଲିକା ପ୍ରସ୍ତୁତ କରାଯାଇ ପାରିବ ।

ଏହି ସମସ୍ତ ଯାତ୍ରା ଭିତରେ ଲୋକଙ୍କର କେବଳ ଧର୍ମୀୟ ଭାବନା ଜଡ଼ିତ, ତା ନୁହେଁ ଆନନ୍ଦ ଉପଭୋଗର ସାମଗ୍ରୀ ମଧ୍ୟ ନିହିତ ।

ପ୍ରାଧ୍ୟାପକ
ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ
ସଂବଲପୁର ବିଶ୍ୱବିଦ୍ୟାଳୟ,
ଜ୍ୟୋତିବିହାର



# ଦିବ୍ୟ ଯୁଗର ଦ୍ରଷ୍ଟା କବି ଭୀମଭୋଇ

ଡ଼କ୍ଟର ଆଦିକନ୍ଦ ସାହୁ

କବି ଭୀମ ଥିଲେ ସମୁଚ୍ଚ ମାନବତାବାଦୀ ସ୍ୱର୍ଗୀୟ ଜୀବନ ବୋଧର ଦ୍ରଷ୍ଟା । ଭକ୍ତ; ମାନବ ପ୍ରେମୀ ଓ ବିପ୍ଳବୀ । କବିର ଅକୁତୋଭୟତା ଓ ସର୍ବକାଳୀନ ବୃହତ୍ତର ମାନବିକ ମୂଲ୍ୟବୋଧ ତା'କୁ ଦିବ୍ୟଯୁଗ ଓ ଜୀବନର ପ୍ରବକ୍ତା କରିଥାଏ ।

ଭୀମଥିଲେ ସଙ୍କଳ୍ପବଦ୍ଧ ଭାବେ ଏକ ଦିବ୍ୟ-ଜୀବନ ବୋଧର ଭାଷ୍ୟକାର । ତାଙ୍କ ଗ୍ରନ୍ଥାବଳୀର ଅଜସ୍ର ଧାଡ଼ ଡେଣୁ ସେହି ଭାଷ୍ୟର ସ୍ୱାକ୍ଷର । ସେ ଏପରି ଜଣେ ସନ୍ଥ କବି ଥିଲେ ଯେ ଆତ୍ମାର ବୌଦ୍ଧିକ ମୁକ୍ତିପାଇଁ ନିଜ ଅନ୍ତରକୁ ସର୍ବଦା ଉନ୍ମୁଖ କରି ରଖୁଥିଲେ । ଆତ୍ମା ଓ ଅନ୍ତରର ଏହି ବୌଦ୍ଧିକ ଉନ୍ମୁଖତା କୋଟି ଜନତାର ହେଉ ଏହାହିଁ ଥିଲା ତାଙ୍କର କାମନା ।

ମଣିଷ ପ୍ରାଣରେ ଆତ୍ମାର ଏହି ବୌଦ୍ଧିକ

ମୁକ୍ତି ପାଇଁ ସମର୍ଥନ ନଥିଲେ ସେ ଏହି ବିପୁଳ ବ୍ୟାବହାରିକ ପୃଥିବୀରେ ସମୁନ୍ନତ ଜୀବନ ଯାପନ କରି ପାରିବ ନାହିଁ । ସ୍ୱାର୍ଥ ସଂଘର୍ଷ ସର୍ବସ୍ୱ ଜୀବନ ଯେଉଁ ଜାଗତିକ ଜୀବନର ଆବର୍ତ୍ତ ସୃଷ୍ଟିକରେ ମଣିଷ କେବଳ ତା'ରି ଭିତରେ ବଞ୍ଚିରହିଲେ ସେ ଇତର ପଶୁ ସ୍ତରରେ ହିଁ ରହିଯିବ । ମଣିଷର ଏକ ସ୍ୱଚ୍ଛ ଓ ବଳଶାଳୀ ନୈତିକ ଓ ଆଧ୍ୟାତ୍ମିକ ଅଭି-ଲିପସା ରହିବା ଆବଶ୍ୟକ ।

ଭୀମ ଭୋଇଙ୍କ କବିତାର ଅଧିକାଂଶ ଧାଡ଼ କୋଟି ଜନଗଣର ଭବାତ୍ମାକୁ ହିଁ ଯଥାର୍ଥରେ ପ୍ରକଟିତ କରିଛି । କବିର କବିତା କବି କଳ୍ପନାର ବିଦ୍‌ଗଦ ବଚନ କେବଳ ନୁହେ । ତାହା କୋଟି ଜନତାର ଆତ୍ମାକୁ ସରସ ସୁନ୍ଦର କରିବାରେ କବିଚିତ୍ତର ଏକ ଉଦ୍‌ବୋଧନ ।

କବି ଭୀମ ଯେଉଁ ସମୟରେ ଉପାନ୍ତ ବଣ ଭୂମିରେ ଶିଷ୍ୟ ପ୍ରଶିଷ୍ୟଙ୍କ ଗହଣରେ ବସି କବିତା ଲେଖୁଥିଲେ ସେତେବେଳେ ଏହି ଓଡ଼ିଶାରେ ଦେବ ଚଉବୀ ଓ ଗନ୍ଧର୍ବ ଉପାଖ୍ୟାନ ଗୁଡ଼କ ଆମ କାବ୍ୟ ସାହିତ୍ୟର ଅତ୍ୟନ୍ତ ସାଙ୍ଗୀତିକ, ପଦ୍ୟବଦ୍ଧ ତଥା ଆଳଙ୍କାରିକ ରୀତିରେ ବର୍ଣ୍ଣିତ ହୋଇଥିବାର ଦେଖିବାକୁ ମିଳେ । କବି ଭୀମଙ୍କ ସାହିତ୍ୟର ଅନ୍ୟତମ ମୌଳିକ ବିଶେଷତ୍ୱ ହେଲା ଯେ ସେ ମଣିଷ ଜାତିର ଆତ୍ମାକୁ ଦିବ୍ୟଜୀବନ ବୋଧ ଆଡେ ଉତ୍ତୋଳିତ କରି ନେବାପାଇ ସଙ୍କଳ୍ପବଦ୍ଧ ହେବା । ଏପରି ସଙ୍କଳ୍ପ ତାଙ୍କ ସମୟରେ ଅନ୍ୟ କବିଙ୍କର ପ୍ରାୟ ନଥିଲା ।

କବି ଭୀମଙ୍କର ଆରାଧ୍ୟ ଦେବତା ଶୂନ୍ୟ ପୁରୁଷ ହେଲେ ହେଁ କେତେ ମହତ୍ତର ମାନବୀୟ ସଦ୍‌ଗୁଣାବଳୀ ଓ ତଦ୍‌ଜନିତ ମୂଲ୍ୟବୋଧକୁ ସେ ସେହି ଶୂନ୍ୟଦେହୀଙ୍କ ଠାରେ ଆରୋପ କରିଛନ୍ତି । ଜାନ୍ତବ ଓ ଜାଗତିକ ଜୀବନ ନିର୍ବାହ କରୁଥିବା ଏ ଜଗତର କୋଟି ପ୍ରାଣୀ କିପରି ଏକ ମହାଜାଗତିକ ଜୀବନ ଆଡକୁ ଆସି ପାରିବେ ଓ ସେମାନଙ୍କର ଦୃଷ୍ଟିପଥ ମହାଦିଗନ୍ତକୁ ଭେଦକରି ପାରିବ ତାହା ଥିଲା କବି ଭୀମଙ୍କର ଆତ୍ମାର ଅଭିଳାଷ ଓ ତାଙ୍କ ସାହିତ୍ୟ ହେଉଛି ସେହି ଅଭିଳାଷର ପ୍ରତିବଦ୍ଧରୂପ ।

ଯେଉଁ ସବୁ ଅନ୍ୟାୟ ଅନୀତି କ୍ରମଶଃ ସମାଜକୁ ପଙ୍ଗୁ କରିଦେଲା ଓ ମଣିଷତାର କଣ୍ଠ ରୁଦ୍ଧ କଲା ଯେଉଁ ସବୁ ସାମାଜିକ ଉପଦ୍ରବ କବି ଭୀମ ସେସବୁକୁ ଜୀବନରେ ଆଦୌ ଗ୍ରହଣ କରିପାରି ନାହାନ୍ତି । ତାଙ୍କ ବ୍ୟଥିତ ଚିତ୍ତ ଉଦ୍‌ବେଳିତ ହୋଇ ଉଠିଛି ତାଙ୍କ ଜୀବନର ଅନେକ ଧାଡ଼ିରେ ।

ସଂଘ ହେଉ ବା ସମାଜ ହେଉ ତାହା ତୁଚ୍ଛ ଜାତି ପ୍ରଥା ଦ୍ୱାରା ଯେ କଳୁଷିତ ହେଉଛି ଭୀମ ଏହା ଜାଣି ଜାତି ପ୍ରଥା ବିରୋଧରେ ନିଜର ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି । ଜଣକର ଦ୍ୱିଜତ୍ୱ ଉପବୀତ ଧାରଣା କରିବାରେ ନଥାଏ । ନିଜସ୍ୱ ଆଚରଣ; ମାର୍ଜିତ ରୁଚି ତଥା ଗଭୀର ଆଧ୍ୟାତ୍ମିକ ବିଶ୍ୱାସ ଜନିତ ବ୍ରହ୍ମଜ୍ଞାନରେ ହିଁ ପ୍ରକୃତ ଭାବେ ଜଣକର ଦ୍ୱିଜତ୍ୱ ପ୍ରକଟିତ ହୋଇଥାଏ ।

ମହିମା ଗାଦିର ସଂଘୀୟ ଜୀବନବୋଧ ଭୀମକୁ ଭରି ପ୍ରଲୁବ୍‌ଧ କରିଥିଲା ସଂଘର ଶୃଙ୍ଖଳା ପରସ୍ପର ପ୍ରତି ଭ୍ରାତୃଭାବରେ ଯଥା ପରସ୍ପର ପ୍ରତି ସ୍ନେହ ଓ ସଦ୍‌ଇଚ୍ଛାରେ ନିହୀତ ।

ଆତ୍ମାର ଅନ୍ତର୍ଗତ ନିୟନ୍ତ୍ରଣକୁ ମାନବର ସମଗ୍ରାନୁଭୂତିର ସମୁଚିତ ଅନୁଶାସନ ବୋଲି କବି ଭୀମ ଉପଲବ୍‌ଧି କରୁଥିଲେ; ଯାହା ସଂଘୀୟ ସଂଗଠନକୁ ବ୍ୟକ୍ତିଗତ ସଂଘର୍ଷ, ଆଦର୍ଶଗତ ବ୍ୟବଧାନ ଓ ବ୍ୟକ୍ତିବାଦ କବଳରୁ ରକ୍ଷା କରିଛି । ଧର୍ମଭୟ ନୁହେଁ ନୀତି ଅନୀତିର ଅନୁଶାସନ ବଳରେ ସେ ତାଙ୍କର ପ୍ରିୟ ଜଗତର ଲୋକଙ୍କୁ ସମଦର୍ଶୀ ହେବାପାଇଁ ଆହ୍ୱାନ କରିଛନ୍ତି । ଆତ୍ମ-ସୁଖ ନୁହେଁ ପର ସଂପର୍କ ବୋଧ ହିଁ ଜଗତର ଅକଲ୍ୟାଣ ଦୂର କରିପାରିବ ବୋଲି ଭୀମ

ଉପଲବ୍ଧି କରିପାରିଛନ୍ତି । ଅନ୍ୟପ୍ରତି ପ୍ରେମଭାବ ଅବା ତାଠାରୁ ଉତ୍କୃଷ୍ଟ ସହନଶୀଳତା ହିଁ ଏ ପୃଥିବୀରୁ ଅନେକ ଅବାଞ୍ଛିତ ବୈରତା ଦୂରକରି ପାରନ୍ତା ବୋଲି ସେ ମନେ କରିଛନ୍ତି । ଏ ବିଷୟରେ ଭୀମ ଥିଲେ ଅଧିକାଂଶରେ ଜଣେ ହେତୁବାଦୀ ।

ଏକ ବୃହତ୍ତର ତଥା ମହତ୍ତର ସାମାଜିକ ଜୀବନ ବୋଧର ଲକ୍ଷ୍ୟନେଇ କବି ଭୀମ ମହିମା ଗାଦି ପରି ଯେଉଁ ଏକ ସଂଘର ପ୍ରତିଷ୍ଠା କରିଥିଲେ ତାହା ମଣିଷ ଜାତିର ଇତିହାସରେ ଏକ ସୃଷ୍ଟିଶୀଳ ଅନୁଷ୍ଠାନ ନିଶ୍ଚୟ । ତାହା କ୍ଷୁଦ୍ର ହେଲେ ହେଁ ସେଥିପ୍ରତି ଭୀମଙ୍କ ପ୍ରାଣର ସତ୍ୟଶୀଳତା ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନକୁ ସୁମହତ କରି ପାରିଛି । ଦିନେ ବୌଦ୍ଧ ସଂଘର ଉଦ୍ଦେଶ୍ୟ ଯାହା ଥିଲା କବି ଭୀମଙ୍କ ମହିମା ଗାଦିର ଉଦ୍ଦେଶ୍ୟ ଥିଲା ସେହିପରି ପୀଡ଼ିତ ମାନବାତ୍ମାର ମୁକ୍ତି । ଏହି ମୁକ୍ତି ଇଚ୍ଛା ତାଙ୍କ ଅଲେଖ ଭଜନାବଳୀକୁ ମାନବୀୟ ଐଶ୍ୱର୍ଯ୍ୟ ଦୃଷ୍ଟିରୁ ପ୍ରକୃତ ଆଭିଜାତ୍ୟ ଆଣି ଦେଇଛି ।

କବି ଭୀମ କେବଳ ନିଜ ପ୍ରାଣର ବୌଦ୍ଧିକ ଓ ଆଧ୍ୟାତ୍ମିକ ମୁକ୍ତିକାମନା କରିନାହାନ୍ତି ବରଂ ସେ କୋଟି ଜନତାର ଆତ୍ମାକୁ ଉତ୍ତୋଳିତ କରିବା ପାଇଁ ସ୍ୱପ୍ନ ଦେଖିଛନ୍ତି । ସେ ଦିନର ରକ୍ଷଣଶୀଳ ଗଡ଼ଜାତି ସମାଜର ଜଣେ ନିଗୃହୀତ ନିପୀଡ଼ିତ କନ୍ଧ ଯୁବକ ପକ୍ଷେ ଏହା କମ ବଡ଼ ସ୍ପର୍ଦ୍ଧା ଓ ପୌରୁଷର ବିଷୟ ନୁହେଁ । ଜଣେ ଅତି ବଡ଼ ସମାଜ ସଚେତନ କବି, ପୁଣ୍ୟାତ୍ମା ତଥା ସଂସ୍କାରକ ଭାବେ କବି ଯେଉଁ ଦିବ୍ୟଯୁଗ ପରିକଳ୍ପନାର ସ୍ୱପ୍ନ ଦେଖିଛନ୍ତି ତାହା ସେଦିନ ତାଙ୍କପରି ସାଧାରଣ ପରିଚୟ ନଥିବା ଗ୍ରାମେ ଗ୍ରାମେ ଗୋରୁ ଜଗି, ବଉଡ଼ବଳି ପେଟ ପୋଷୁଥିବା, ବଣର ଫଳ ଓ ଝରଣାର ଜଳ ପାନ କରି କ୍ଷୁଧା ତୃଷ୍ଣା ନିବାରଣ କରୁଥିବା ଏପରି ଜଣେ ଅନ୍ଧ ଓ କନ୍ଧ ଯୁବକ ପକ୍ଷେ ପୁଣି କମ ବଡ଼ ଭୀଷ୍ମ ପ୍ରତିଜ୍ଞାର ବିଷୟ ନୁହେଁ ।

ତାଙ୍କ ପୂର୍ବରୁ ଓ ତାଙ୍କ ସମସାମୟିକ ଓଡ଼ିଆ କବିମାନେ ଯେତେବେଳେ ରାଧାକୃଷ୍ଣ ଲୀଳା, ରାମ-ବିବାହ, କିଚକ ବଧ ଓ ବିଭିନ୍ନ ହରଣ ଓ ସ୍ୱୟମ୍ବରର କଥାମାନଙ୍କୁ ସରସ ପଦ୍ୟ କରିବାରେ କେବଳ ମନ ପ୍ରାଣ ଢାଳି ଦେଇଥିଲେ ସେତେବେଳେ ଭୀମ ସାହିତ୍ୟକୁ ନବଯୁଗ ନିର୍ମାଣର ମାଧ୍ୟମ ଭାବେ ଗ୍ରହଣ କରିଥିଲେ ସାହିତ୍ୟର ଏହି ମୂଲ୍ୟବୋଧଗତ ବା ଅଭିମୁଖ୍ୟ ଗତ ନୂତନତା ଓଡ଼ିଆ ସାହିତ୍ୟର ଗତିଧାରରେ ଭୀମଙ୍କୁ ଏକ ବ୍ୟତିକ୍ରାନ୍ତ ବ୍ୟକ୍ତିତ୍ୱର ଯୁଗପୁରୁଷ ଭାବେ ଚିହ୍ନିତ କରେ ।

ଯୁଗେ ଯୁଗେ କବି, ଲେଖକ, ଦାର୍ଶନିକ, ମହାପୁରୁଷ ସମସ୍ତେ ସାଧାରଣ ମଣିଷକୁ କ୍ରମଶଃ ଦିବ୍ୟ ଜୀବନ ଆଡେ ଗତି କରିବା ପାଇଁ ଉଦ୍‌ବୋଧନ ଦେଇ ଆସିଛନ୍ତି । କାରଣ ଏହି ଜାଗତିକ ପୃଥିବୀରେ ଏକାକି ସ୍ଥୂଳ ଜୀବନ ପରିଚର୍ଯ୍ୟା ଭିତରେ ଜଣେ ଜୀବନ ଯେ ଏକ ତପସ୍ୟାର ଫଳ— ଏହି ମହତ୍ତର ଉପଲବ୍ଧି କରିପାରେ ନାହିଁ । ବଣ ପାହାଡ଼, ଗିରିଝରଣା, ନଦୀ ଆକାଶର ବିମଳ ଶୋଭା ଦେଖି ମଣିଷ କେବଳ ତେଣୁ କେତେକ ପରିବୋଧନୀୟ ବିରଳ ମୁହୂର୍ତ୍ତରେ ତନ୍ମୟଚିତ୍ତ ହୋଇ ପଡେ ।

ଯେ ଯେତେ ବଡ ଆଧ୍ୟାତ୍ମିକବାଦୀ ସେ ସେତିକି ଭାବରେ ବେଶି ପ୍ରକୃତି ପ୍ରାଣ । ବନ ଗହନରେ ଘୋର ନିକାଞ୍ଚନରେ ଭ୍ରମଣ କରୁଥିବା ଭୀମ ପ୍ରକୃତି ଭିତରେ ମୁହ୍ୟମାନ ହୋଇ ଯାଉଥିଲେ । ଜନପଦର ତୁଚ୍ଛ ଜୈନନ୍ଦିନତା ପ୍ରତିଟି ଜାନପଦିକ ସଂଘର୍ଷ ଓ ଅତ୍ୟଧିକ ଲୋଭ ପାପ ମଣିଷର ଆତ୍ମାର ମୁକ୍ତି ମାର୍ଗକୁ ଯେ ରୁଦ୍ଧକରେ ଭୀମ ଏହା ଜାଣି ପାରିଥିଲେ ।

ଏକ ମିଶନାରୀ ଦାୟିତ୍ୱ ତୁଲାଇବା ପାଇଁ ସତେ ଯେପରି ସେ ତାଙ୍କ କବିତ୍ୱକୁ ଏକ ମାଧ୍ୟମ କରିଥିଲେ । ନୂତନ ଅଳଙ୍କାର ଛତୁରୀ; ନୂତନ

ବ୍ୟଂଜନା ପ୍ରଘ ବା ସୁମଧୁର ସଙ୍ଗୀତାବଳୀ ସୃଷ୍ଟି କରିବାର ଲକ୍ଷ୍ୟ ଅପେକ୍ଷା ଦିବ୍ୟଯୁଗ ସୃଷ୍ଟିକରିବାର ଇଚ୍ଛା ତାଙ୍କୁ ବାରବାର ପ୍ରୋତ୍ସାହିତ କରିଛି ।

ନିଜ ଦୁଃଖ ଓ ଦାରିଦ୍ର୍ୟରେ ସେ ବ୍ୟଥିତ ହୋଇ ନାହାନ୍ତି । ସେ ବ୍ୟଥିତ ହୋଇଛନ୍ତି ସମାଜର ଅଧୋଗତି ଦେଖି । ସମାଜରେ ଅନେକଙ୍କ ଅନ୍ଧ ଆସ୍ତିକତା, ପୌତ୍ତଳିକତା, ଅନ୍ୟପ୍ରତି ଅପ୍ରେମ ଅଶ୍ରଦ୍ଧା, ଜଘନ୍ୟ ଜାତି ପ୍ରଥା ଆଦି ବହୁ ବିଷୟରେ ତାଙ୍କ ଚିତ୍ତ କ୍ଷୁବ୍ଧ ହୋଇଛି । ସେ ସମାଜକୁ ସବୁମତେ ସର୍ବାଙ୍ଗ ସୁନ୍ଦର କରିବାପାଇଁ ସ୍ୱପ୍ନ ଦେଖିଛନ୍ତି ଓ ଏହି ସ୍ୱପ୍ନହିଁ ତାଙ୍କ କବିତାର ବହୁ ପଦ ପଂକ୍ତି ଭିତରେ ପ୍ରତୀକିତ ହୋଇଛି ।

ଯେଉଁ ଶିଳ୍ପୀ ମାନବାତ୍ମାର କଲ୍ୟାଣ କାମନା କରେ ଓ କବିର ଏହି କଲ୍ୟାଣକର ଉପଲବ୍‌ଧିକୁ ସେ ପ୍ରକାଶ କରେ ତା ଆତ୍ମାକୁ ଅନାବୃତ କରି ସେ ହିଁ ସର୍ବକାଳର କବି । ବାହ୍ୟ ଆଳଙ୍କାରିକତା ନୁହେଁ ବରଂ କବିର ସେହି ମାନବ କଲ୍ୟାଣକର ବିଗଳିତ ଚିତ୍ତ କବିତାକୁ ଅନନ୍ତକାଳ ପାଇଁ ପ୍ରାଣସ୍ପର୍ଶୀ କରି ରଖିଥାଏ । କବି ଚିତ୍ତର ଏହି ଭବ ପରିଚର୍ଯ୍ୟା ତାକୁ ଏକ ସୁସ୍ଥ ସମାଜ ପ୍ରତିଷ୍ଠାର ପ୍ରସ୍ତାବକ କରିଥାଏ । ନିଜର ଚିତ୍ତଭୂମି ପରର ମଙ୍ଗଳ କାମନା ସ୍ୱପ୍ନରେ ଅଭିସିଞ୍ଚିତ ନହେଲେ ଜଣେ ପ୍ରାଣ ଦେଇ ଆତ୍ମାର ସଶ୍ରଦ୍ଧ ଉଚ୍ଚାରଣ କରି ପାରିବ ନାହିଁ । କାରଣ ଚୈତନ୍ୟ ହିଁ ସବୁକଥା । 'The poet draws his inspiration from his soul and heart." (Croce)
ଅଳଙ୍କାର ଯୋଡବା ସତ ଓ ଶକ୍ତିଶାଳୀ କବିଙ୍କର ଲକ୍ଷ୍ୟ ନୁହେଁ ଏକ ବୃହତ୍ତର ଜାତୀୟ ଜୀବନର ଭବ ପରିଧିରେ ବଡ କବି ମାତ୍ରେ ହିଁ ବିଷୟ ବିନ୍ୟାସ କରିଥାଏ ଓ ତା'ର ବାର୍ତ୍ତା ସେହି ଭବରେ ଉଦ୍‌ବୋଧନ ମୂଳକ ହୋଇଥାଏ । ଭୀମଭୋଇ ସମାଜକୁ ନାନାମତେ ସୁସ୍ଥ ସୁନ୍ଦର କରିବାର ଯେଉଁ ପରିକଳ୍ପନା କରିଛନ୍ତି ତାଙ୍କର କେତେକ କବିତା ତା'ର ଏକ ପଦ୍ୟବଦ୍ଧ ଇସ୍ତାହାର ।

କବି ଭୀମ ବଣଭୂମିରେ ବାସ କରୁଥିଲେହେଁ ଆର୍ତ୍ତି, ଅଶ୍ରୁ, ଜୀବ ଦହନ ବିଦଗ୍ଧ ଜାନପଦିକ ଜୀବନର ଦୁଃଖ ମୋଚନ କରିବାପାଇଁ ଶୂନ୍ୟଦେହୀଙ୍କୁ ନିରନ୍ତର ପ୍ରାର୍ଥନା କରିଛନ୍ତି । କବି କୋଟି ଜନଗଣ ପ୍ରାଣକୁ ବ୍ୟଥା ବେଦନାରୁ ରକ୍ଷା କରିବାପାଇଁ ନିଜର ଗଭୀର ଆନ୍ତରିକତା ପ୍ରକାଶ କରିଛନ୍ତି ।

କବିଙ୍କର କେତେ ଧାଡ଼ି ରଚନା ସେହି "ସର୍ବେସନ୍ତୁ ନିରାମୟ" ଶ୍ଲୋକ ଉଚ୍ଚାରଣ କରୁଥିବା ବୈଦିକ ଋଷିର ବାଣୀ ପରି ନିଜସ୍ୱ ପ୍ରାର୍ଥନା, ନିଜ ସଂକଳ୍ପର ସଶ୍ରଦ୍ଧ ପ୍ରକାଶ; ଅଥଚ କେତେ ଉଦାତ୍ତ ଓ ଗମ୍ଭୀର ସେ ବାଣୀ ।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡଥାଉ
ଜଗତ ଉଦ୍ଧାର ହେଉ ।"

ହିଂସା ନୁହେଁ ଅହିଂସା ହିଁ ମଣିଷ ଜୀବନର ଶ୍ରେଷ୍ଠ ଚର୍ଯ୍ୟା ହେବା ଉଚିତ । କବିଙ୍କ ନବଜୀବନ ବୋଧ ତାଙ୍କ ସମୟର ସମାଜ ଦ୍ୱାରା ସେତେବେଶୀ ଗୃହୀତ ହୋଇ ନଥିଲା । ସେ ଦିନର ଧର୍ମାନ୍ଧ, ଓ ଜାତି ପ୍ରଥା ଦ୍ୱାରା କଳୁଷିତ ସମାଜକୁ ମାର୍ଜିତ କରିବା ପାଇଁ ମଣିଷର ଦୈନନ୍ଦିନ ଜୀବନ ପରିଚର୍ଯ୍ୟା ସଂପର୍କରେ କବି ଭୀମ ନାନା ହେତୁ ବାଦୀ ପ୍ରଶ୍ନ ଉତ୍‌ଥାପନ କରିଯାଇଛନ୍ତି । ଧର୍ମ, ବିଚାର, ଆତିଥ୍ୟ ଆଚରଣ, ସମାଜ ସେବା, ଗୁରୁପୂଜା, ଈଶ୍ୱର ବିଶ୍ୱାସ ଏପରିକି ଦାଂପତ୍ୟ ଜୀବନର ପ୍ରେମ ପ୍ରଣୟ, ପୁରୁଷର ସ୍ତ୍ରୀ ସହବାସ ଓ ନାରୀର ଋତୁପାଳନ ସଂପର୍କରେ ନବଯୁଗ ଦ୍ରଷ୍ଟା କବି ଭୀମ ବାସ୍ତବ ପ୍ରବଚନ ଦେଇ ଯାଇଛନ୍ତି । ଆତ୍ମା ଓ ଶରୀର ଉଭୟର ସ୍ୱାସ୍ଥ୍ୟ ବିଧାନ ଥିଲା ଭୀମଙ୍କ ନୂତନ ସମାଜ ପରିକଳ୍ପନାର ଅନ୍ୟତମ ଲକ୍ଷ୍ୟ । ବ୍ୟକ୍ତିର ଶରୀର ରୁଗ୍‌ଣ ହୋଇପଡ଼ିଲେ ତା'ର ସମାଜ ଧର୍ମ ମଧ୍ୟ ବିପନ୍ନ ହୋଇପଡ଼ିବ ବୋଲି ସେ ମନେ କରୁଥିଲେ ।

ଉଭୟ ରଜା ପ୍ରଜା, ଧନୀ ଦରିଦ୍ର ସମସ୍ତଙ୍କ ଆଗରେ ସେ ତାଙ୍କର ଧର୍ମ ଦର୍ଶନ ଓ ଆଦର୍ଶକୁ ସୁନ୍ଦର ପଦାବଳୀରେ ଉପସ୍ଥାପନ କରି ଯାଇଛନ୍ତି । ସେତେବେଳେ ସମଗ୍ର ଭାରତ ବର୍ଷରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏକ ଶୁଦ୍ଧ ଉଦାର ମାନବ ଧର୍ମ ସମ୍ବଳିତ ବ୍ରାହ୍ମ ଧର୍ମର ପ୍ରଭାବ ଇତସ୍ତତଃ ପରିଲକ୍ଷିତ ହେଉଥିଲା । କେତେକ ମିଶନାରୀ ମଧ୍ୟ ଭାରତ-ବର୍ଷ ସମାଜରୁ ଅନ୍ଧ ପୌତ୍ତଳିକତା, ନାନା ପ୍ରକାର ଅନ୍ଧବିଶ୍ୱାସ ଦୂର କରିବାପାଇଁ ସକ୍ରିୟ ଉଦ୍ୟମ ଆରମ୍ଭ କରି ଦେଇଥିଲେ । ହୁଏତ ଭୀମଙ୍କ ଗୁରୁ ଅଲେଖ ଗୋସାଇଁ ଜଣେ ବ୍ରାହ୍ମ ଧର୍ମାବଲମ୍ବୀ ହୋଇ ପାରିଥାନ୍ତି ।

ଭୀମ ଯେଉଁ ସମାଜରେ ଜନ୍ମ ଗ୍ରହଣ କରି-ଥିଲେ ସେହି ଅନ୍ଧ ସମାଜ ଥିଲା ନାନା କୁସଂସ୍କାର ଗ୍ରସ୍ତ ରକ୍ଷଣଶୀଳ ସମାଜ । ପ୍ରାଚୀନ ବିଶ୍ୱାସର ବଶବର୍ତ୍ତୀ ହୋଇ ଏହି ଅନ୍ଧମାନେ ହଳଦୀର ରଂଗ ହେବାପାଇଁ ହଳଦୀ କିଆରୀରେ ନରବଳି ଦେଉ-ଥିଲେ । ହେତୁବାଦୀ ତଥା ମାନବବାଦୀ ଭୀମଙ୍କୁ ଏହି ନରବଳି ପ୍ରଥା ହୁଏତ କମ ବ୍ୟଥିତ କରି ନଥିବ ।

ପୁରୀର ପଣ୍ଡା ଓ ମଠାଧୀଶମାନେ ୟୁରୋପର ଧର୍ମଯାଜକଙ୍କ ପରି ସାଧାରଣ ଲୋକଙ୍କ ଉପରେ ଧର୍ମନାମରେ ଶୋଷଣ ଆରମ୍ଭ କରିଥିଲେ । ପୁରୀର ଅନୀତି ଅନାଚାରକୁ ଲକ୍ଷ୍ୟ କରି ମିଶନାରୀ ମାନେ ପୁରୀକୁ ସଇତାନର ନିବାସ ସ୍ଥଳୀ ( Devil's headquarters) ବୋଲି ବର୍ଣ୍ଣନା କରୁଥିଲେ । କବି ଭୀମ ତେଣୁ ଏହି ଧର୍ମ ଯାହା ପିତ୍ତଳା ପୂଜା ସର୍ବସ୍ୱ ଥିଲା ତାହା ବିରୋଧର ଜଣେ ବିପ୍ଳବୀ ସଂସ୍କାରକର ମନୋଭାବ ନେଇ ପ୍ରତିବାଦ କରିଛନ୍ତି । ଜଗନ୍ନାଥ କେବଳ ହିନ୍ଦୁମାନଙ୍କର ଦେବତା ହୋଇ ରହିଛନ୍ତି । ଜଗନ୍ନାଥଙ୍କ ପୂଜାରୀମାନେ ହିନ୍ଦୁଙ୍କ ବ୍ୟତୀତ ଅନ୍ୟମାନଙ୍କୁ ବିଜାତୀୟ ବିଧର୍ମୀ ଜ୍ଞାନ କରୁଥିଲେ । ଭୀମ ତାଙ୍କ ଶିଷ୍ୟ ପ୍ରଶିଷ୍ୟଙ୍କ ଗହଣରେ ପୁରୀ ମନ୍ଦର ଆକ୍ରମଣ କରିବା କମ ବଡ ସ୍ପର୍ଦ୍ଧିତ ଘଟଣା ନୁହେଁ । ଏହା ଭୀମଙ୍କ ସାହସ ଓ ଆଧ୍ୟାତ୍ମିକ ଶକ୍ତିର ପରିଚୟ ଦିଏ ।

ଅତିବଡ ଏକ ଆଧ୍ୟାତ୍ମିକ ଜୀବନ ପ୍ରତି କବିଙ୍କ ପ୍ରାଣର ଉନ୍ମୁଖତା କବିଙ୍କୁ ନିର୍ଭିକ କରିବା ସଙ୍ଗେ ସଙ୍ଗେ ଏକ ସୁନ୍ଦର ପ୍ରେମମୟ ନବ ଜୀବନ ପ୍ରତି ଆକୃଷ୍ଟ କରିଥିଲା । ଯେଉଁ ଜୀବନ ସତତ ପାପତାପରେ ପୀଡ଼ିତ, ଶଙ୍କାକୁଳ ଅସ୍ଥିର ଓ ଅସଂଯତ ସେ ଜୀବନ ଦେଇ ଜଣେ ନବ ଜୀବନର ସ୍ୱାଦ ଲାଭ କରି ପାରିବ ନାହିଁ । ଅନ୍ତରକୁ ନିର୍ଭିକ ଓ ନିର୍ମଳ କଲେ ଯାଇ ଜଣେ ପ୍ରକୃତରେ ଦେବତ୍ୱର ଉପଲବ୍ଧି କରିପାରିବ ।

ଏକାନ୍ତ ଗୃହସ୍ଥର ଜୀବନ ଭିତରେ ବି ନିଜର କୌଳିକ ବୃତ୍ତି କରି ଜଣେ ଈଶ୍ୱରମୟ ଜୀବନ-ଯାପନ କରିପାରେ । ନିର୍ମଳ ମନ, ସଦ୍‌ଗୁରୁ ଗହଣ ଓ ଉଦାର ମାନବ ପ୍ରେମ ହିଁ ଜଣକୁ ଦିବ୍ୟଜୀବନ ଲାଭର ମାର୍ଗ ଉନ୍ମୁକ୍ତ କରିଦିଏ । ଭୀମଙ୍କର ଏହି ଦିବ୍ୟଜୀବନ ବୋଧ ଓ ତା'ର ପୁଲକାନୁଭୂତି ସେଦିନ ସମାଜରେ ଏକାନ୍ତ ଅଭିନବ ଥିଲା । ଆଗାମୀ ଦିନର ସାମାଜିକ ସଂସର୍ଗ, ସଂସ୍କୃତି, ଧର୍ମ ଧାରଣା ତଥା ଜାତୀୟତାବୋଧର ବାସ୍ତବ ରୂପ-ରେଖ କ'ଣ ହେବ ତାହା ଭୀମ ଜଣେ ଭବିଷ୍ୟ ଦ୍ରଷ୍ଟା ଭାବେ ଯେପରି ଜାଣି ପାରୁଥିଲେ ।

ସେ ଲେଖିଛନ୍ତି —

'ପୂର୍ବର ଲୋକ ପ- ଶ୍ଚିମେ ପଳାଇବେ
ପଶ୍ଚିମର ଲୋକ ପୂର୍ବେ
ଚାରି ଦିଗ ଲୋକେ ଏକାତ୍ମ ହୋଇବେ
ମିଶା ମିଶି ହୋଇ ସର୍ବେ ।'

ଭୀମ ଯେଉଁ ଦିବ୍ୟ ଯୁଗ ଓ ଜୀବନର ସ୍ୱପ୍ନ ଦେଖିଥିଲେ । ଏ ପ୍ରତିମା ପୂଜା ସେହି ଦିବ୍ୟ ଜୀବନ-

ବୋଧର ବାଧକ ବୋଲି ସେ ସ୍ପଷ୍ଟ ଉପଲବ୍ଧି କରୁଥିଲେ । ଗୋଟିଏ ପ୍ରତିମା ଗୋଟିଏ ଭୂଖଣ୍ଡର ଜନପୁଂଜକୁ ଗୋଟିଏ ଶ୍ରେଣୀରେ ପରିଣତ କରେ । ସେହିପରି ଆଉଗୋଟିଏ ପ୍ରତିମା ଅନ୍ୟଏକ ଧର୍ମାବଲମ୍ବୀ ଶ୍ରେଣୀ ସୃଷ୍ଟିକରେ । କିଏ ଦେବଭକ୍ତ ତ କିଏ ଦେବୀ ଉପାସକ ହୋଇଥାଏ । କିଏ ଶୈବ, କିଏ ଶାକ୍ତ ତ ପୁଣି କିଏ ବୈଷ୍ଣବ ଅବା ପୁଣି କିଏ ଗାଣପତ୍ୟ । ଏହି ପ୍ରତିମା ପୂଜା ଭେଦରେ ଗଢ଼ଉଠିଥିବା ଧାର୍ମିକ ଶ୍ରେଣୀ ମଧ୍ୟରେ ସଂଘର୍ଷ ଏକାନ୍ତ ଦୁର୍ନିବାର ।

ଏହିପରି ଭରତ ବର୍ଷ ୩୬ କୋଟି ଦେବତାର ନିବାସ ସ୍ଥଳ । ଏହି ମୂର୍ତ୍ତିପୂଜା ନାଁରେ ଆମର ସାମାଜିକ ସଂହତି, ମୈତ୍ରୀ ଓ ବୁଝାମଣା ଯେ କେତେ ବ୍ୟାହତ ନହୁଏ ? ଅଥଚ ଆମେ ସେହି ପ୍ରତିମା ପୂଜା ନାଁରେ ବେଳେ ବେଳେ ସମାଜର ନିଷ୍ପାପ ମଣିଷର ମଣିଷତାକୁ ବି ବେଖାତିର କରି ଯାଉଁ ।

ଭୀମଙ୍କ ମୃତ୍ୟୁର ଅନେକ ବର୍ଷ ପରେ ବି ଭରତବର୍ଷରେ ଆଜି ଏହି ପ୍ରତିମାପୂଜା ଓ ମେଢ ଶୋଭଯାତ୍ରା ସମୟରେ ଦଙ୍ଗାହୋଇ ଶହ ଶହ, ହଜାର ହଜାର ଲୋକ ମୃତ୍ୟୁବରଣ କରନ୍ତି ଭରତ ବର୍ଷର କୌଣସି ନା କୌଣସି ଭୂଖଣ୍ଡ ମଣିଷ ରକ୍ତରେ ରଂଜିତ ହୁଏ । କବି ଭୀମଙ୍କର ଦିବ୍ୟ-ଜୀବନ ସଂପର୍କିତ ସ୍ୱପ୍ନ ଯଦି ସାର୍ଥକ ହୋଇ ଥାନ୍ତା ତାହେଲେ ଜାତି ଓ ପୌତ୍ତଳିକତା ନାମରେ ମଣିଷ ସମାଜରେ ଆଜି ନରସଂହାର ଚାଲି ନଥାନ୍ତା ।

ସମସାମୟିକ କଳୁଷିତ ବାତାବରଣ ଶୀଘ୍ର ଅପସାରିତ ହେବ କବି ଭୀମ ଏ ବିଷୟରେ ହିବ୍ରୁ ଋଷି ମାନଙ୍କ ପରି ଏକାନ୍ତ ଆଶାବାଦୀ ଥିଲେ । ତାଙ୍କ ମହିମା ଗାଦିକୁ ପ୍ରକୃତରେ ଏହି ନବ ଯୁଗର ବାର୍ତ୍ତା ପ୍ରଚାର ପ୍ରସାର ପାଇଁ ଏକ ସଂଘରେ ପରିଣତ କରିଥିଲେ ।

ଭୀମ ସେ ଦିନ ନିଜହର ଥାଇ ଆପଣାର ଅତିବଡ ହୃଦୟବତ୍ତା ଦେଇ ସେ ତାଙ୍କ ଗୁରୁ ମହିମା ଗୋସାଇଁଙ୍କ ଦ୍ୱାରା ଉଦ୍‌ବୋଧିତ ହୋଇ-ଛନ୍ତି । ଏ ଦୃଷ୍ଟିରୁ କବି ଜୀବନଥିଲା ଗୁରୁପଦଧ୍ୟାୟୀ ଏକ ଉତ୍ସର୍ଗୀକୃତ ତଥା ଉଦ୍‌ବୋଧିତ ଜୀବନ ।

ଭୀମଥିଲେ ଭ୍ରାମ୍ୟମାଣ । ଭୀମଙ୍କର ଏହି ଭ୍ରାମ୍ୟମାଣ ଯାଯାବର ଜୀବନ ତାଙ୍କର ଜ୍ଞାନଦୃଦିକ ମୋହ ଦୂର କରିଥିଲା ଓ ସେ ବିଶ୍ୱକୁ ଗୋଟିଏ ଜନପଦ ବୋଲି ମନେ କରୁଥିଲେ । ପୁରୁଣା ସମାଜକୁ ନୂଆ କରି ଗଢିବାର ଉଦ୍ଦେଶ୍ୟ ପ୍ରତ୍ୟେକ ସମାଜ ସଚେତନ ସତ୍ ସାହିତ୍ୟିକଙ୍କର ଥାଏ । ଏହି ଗଢିବାର ସଦିଚ୍ଛା ପ୍ରତ୍ୟେକ ସତ୍ ସୃଜନଶୀଳତାର ସର୍ତ୍ତ ।

ସତେ ଯେପରି କବି ଭୀମଭୋଇ ଜଣେ ମହାନ ସନ୍ୟାସୀଙ୍କ ପରି ନିଜର ଆଧ୍ୟାତ୍ମ୍ୟ ଅଭିଲିପସାକୁ ସହସ ସଙ୍ଗୀତାବଳୀ ଭିତରେ ଗାଇ ଯାଇଛନ୍ତି । କବିତାକୁ ମଧ୍ୟଯୁଗୀୟ ଆଳଙ୍କାରିକ ଆଦର୍ଶରେ ଗଢିତୋଳିବାର ଆଳଙ୍କାରିକ ଚେଷ୍ଟା ଅପେକ୍ଷା ନିଜ ଭବ ଭବନାକୁ ସରଳ ପଦ ପଦାର୍ଥ ଭିତରେ ବ୍ୟକ୍ତ କରିବାର ପ୍ରବଣତା ତାଙ୍କର ଅଧିକ ଥିଲା । କାରଣ ମଧ୍ୟଯୁଗୀୟ ଅନେକ ଓଡଆ କାବ୍ୟ କର୍ତ୍ତାଙ୍କ ପରି କାବ୍ୟ ସାଧନା ତାଙ୍କ ଉଦ୍ଦେଶ୍ୟର ବିଷୟ ନଥିଲା । କବିତା ଥିଲା ତାଙ୍କ ନବଯୁଗ ନିର୍ମାଣର ଏକ ମାଧ୍ୟମ ।

ଜଣେ କବି କେତେ ଚମତ୍କାର ଅଳଙ୍କାର ସୃଷ୍ଟି କରିଛି, କେତେ ଖଣ୍ଡ କାବ୍ୟ ରଚନା କରିଛି ତାରି ଉପରେ କବିର କବିତ୍ୱ ନିର୍ଣ୍ଣିତ ହୁଏ ନାହିଁ । ହୁଏ ବରଂ ଜଣେ କବିର ସତଇଚ୍ଛା ଓ ସତ୍ ସଙ୍କଳ୍ପର ସ୍ୱକୀୟତାରୁ । ସତ୍ ଭବନାରେ, କୋଟି ମଣିଷର ଦୁଃଖ ମୁଞ୍ଚନ କରିବାର କାମନାରେ ଜଣକର ଚିତ୍ତ ଆତ୍ମବିଭୋର ନ ହେଲେ ସେ କବି ହୋଇ ପାରିବନି ।

ଭୀମ ଭୋଇଙ୍କର ଆତ୍ମା ସତରେ ଭବ ବିଦ୍ରୂଳ ଆଧ୍ୟାତ୍ମ୍ୟ ଭବରେ ଉଦ୍‌ବୋଧିତ ଆତ୍ମା । ତେଣୁ ତାଙ୍କ କବିତାର ବ୍ୟଂଜନା ପ୍ରଖର ଚମତ୍କାରିତା ନିର୍ଣ୍ଣୟ କରିବା ଅପେକ୍ଷା ତାଙ୍କ ଆତ୍ମାର ସେହି ମାନବ କଲ୍ୟାଣ କର ବର୍ଣ୍ଣାଢ୍ୟ ଭବ ବିନ୍ଦୁଟିକୁ ହିଁ ସବୁମତେ ଚିହ୍ନଟ କରିବା ଆବଶ୍ୟକ ।

ସମାଜକୁ ନୂଆ କରି ଗଢିବାର ଅଭିଳାଷ ଭୀମଙ୍କୁ କ୍ରମଶଃ ଏକ ବୃହତ୍ତର ଆଧ୍ୟାତ୍ମିକ ସଂଗଠନ ଭିତରକୁ ନେଇ ଯାଇଥିଲା । ଏ ପାର୍ଥିବ ଜଗତରେ ଜଣେ ସଂସାର କର୍ମବ୍ୟସ୍ତ ଗୃହସ୍ଥ ନିଜକୁ ସମର୍ପି ଦେଇ କେବଳ ସଦାଚାରୀ ହୋଇ ପାରିବ ବୋଲି ଭୀମ ଉପଲବ୍‌ଧି କରିଛନ୍ତି । ଏ ବାସ୍ତବ ବୋଧିଚିତ୍ତର ତୁଳନା ନାହିଁ ।

ଭୀମ ଲେଖିଛନ୍ତି—

'ଆପଣା ପିଣ୍ଡ ପ୍ରାଣ ଦାନ କରିବା ସଦ୍‌ଗୁରୁଙ୍କ ପାଦେ
ଦାରାସୁତ ବିତ୍ତ ସକଳ ସମର୍ପି ରହିବା ମନ ଆନନ୍ଦେ ।
ଆପଣା ଭଇ ଭଗ୍ନୀ ଜ୍ଞାତି ବାନ୍ଧବ ସକଳ ସମର୍ପି ଦେଇ
ପାଇଲ ବୋଲି ସତ୍ୟ ସତ୍ୟ କହିବ ମନରେ ଆନନ୍ଦ
ହୋଇ ।'

ବିଷୟାସକ୍ତି ହିଁ ଅନନ୍ତ ଦୁଃଖର କାରଣ । ଜଣେ ବିଷୟୀ ମଣିଷ ଜଗତର ହୀରା, ନୀଳା, ମୋତି ମାଣିକ୍ୟ ଠାରୁ ଆହୁରି ମନୋଲୋଭ ବଣର ଫୁଲ, ଆକାଶର ତାରା, ଭରା ବାଦଲ ଗତି ପ୍ରତି ବେଳେ ବି ପ୍ରଲୁବଧ ହୋଇପାରେ ନାହିଁ । ଜୀବନ ସରିଯାଏ । କି ଅସାର ଜୀବନ ସେମାନଙ୍କର । ଭୀମ ସେମାନଙ୍କ ଜୀବନର ଆନନ୍ଦ ପାଇଁ, ମୁକ୍ତି ପାଇଁ ଗୀତ ଗାଇଛନ୍ତି ।

ଟଲଷ୍ଟୟ, ଗାନ୍ଧୀ ପ୍ରମୁଖ ଜନନାୟକ ମାନେ ସମାଜରେ ସମାଜବାଦୀ ଚେତନାକୁ ବ୍ୟକ୍ତି ଅନ୍ୟ ପ୍ରତି ତା ନିଜ ପବିତ୍ର ସାମାଜିକ କର୍ତ୍ତବ୍ୟ ବୋଧର ଅଂଶ ବୋଲି ତା ଅନ୍ତର ଦେଇ ମନେକରୁ ବୋଲି ଯାହା କହିଛନ୍ତି ଭୀମ ଅନୁରୂପ ଭବେ ଅନ୍ୟପ୍ରତି ସମସ୍ତେ ଉତ୍ସର୍ଗୀକୃତ ମନୋଭବ ପୋଷଣ କରନ୍ତୁ, ଅନ୍ୟପ୍ରତି ଦୟାର୍ଦ୍ର ହୁଅନ୍ତୁ ବୋଲି ଆଶା କରିଛନ୍ତି । କାରଣ ପୃଥିବୀର କୁତ୍ରାପି ମଣିଷ ପ୍ରତି ମଣିଷର ଦୟା ଓ ସମ୍ବେଦନଶୀଳତା ଏକ ରାଜନୀତିକ ସର୍ତ୍ତର ବିଷୟ ନୁହେଁ । ସେହିପରି ସମାଜବାଦ । ତାହା ସମାଜର ପ୍ରତ୍ୟେକ ଲୋକ ଅନ୍ତରରୁ ସ୍ୱତଃ ଉତ୍ସାନ୍ତରିକ ହୋଇ ଆସିବା ଉଚିତ ।

ମଣିଷ ନିସର୍ଗଭବେ ସମାଜବାଦୀ ହେଉ କବିଙ୍କ ଅନ୍ତରର ଏହାଥିଲା ସବୁଠାରୁ ବଡ ଆଶାବାଦୀ ଅଭିଳାଷ । ଦିବ୍ୟ ଯୁଗର ଦ୍ରଷ୍ଟା ଭୀମ ଖାସ୍‌ ଏଇ ସ୍ୱପ୍ନ ହିଁ ଦେଖିଛନ୍ତି । ସଦ୍‌ଗୁରୁ ଚରଣରେ ମଥାନତ କଲେ । ଜଣେ ନିଜକୁ ସ୍ୱାର୍ଥପରତା ଠାରୁ ରକ୍ଷାକରି ପାରିବ ଓ ଜୀବନରେ ଦିବ୍ୟ ଆନନ୍ଦ ଲଭ କରି ପାରିବ ।

ଭୀମଙ୍କ ପରିକଳ୍ପିତ ଯୁଗ ଓ ସମାଜର ମଣିଷ ଆତ୍ମମୁଖୀ ନ ହୋଇ ବହୁମୁଖୀ ଓ ବିଶ୍ୱମୁଖୀ । ଭୀମ ପ୍ରତ୍ୟେକ ଜନପଦକୁ ଏକ ଏକ ଆଶ୍ରମ ଜ୍ଞାନ କରି-ଛନ୍ତି; ଯେଉଁଠି ବ୍ୟକ୍ତିର ବୃହତ୍ତର ଲୋକ ସଂପର୍କ ପରିବ୍ୟାପ୍ତ ହୁଏ ସିନା ସଙ୍କୁଚିତ ହୁଏ ନାହିଁ । ଲୋକର ବିଶୟାସକ୍ତି ଓ ମନ୍ଦ ସଂସର୍ଗ ତା' ଆତ୍ମ ସଙ୍କୋଚନର କାରଣ ହୋଇଥାଏ ।

କ୍ଷମା, କରୁଣା ରାଜ ଦଣ୍ଡକୁ ନିୟନ୍ତ୍ରଣ କରୁ । କୌଣସି ପ୍ରକାର ଅମାନବିକ କଠିନ ରାଜଦଣ୍ଡ ଶାସିତର ହୃଦୟ ବଦଳାଇ ଦେଇପାରେ ନାହିଁ ବୋଲି ଭୀମ ମନେ କରୁଥିଲେ । ତଦାନୀନ୍ତନ ପ୍ରଜା ପୀଡକ ରାଜ ପୁରୁଷଙ୍କୁ ଆହ୍ୱାନ ଦେଇ କବି ଗାଇଛନ୍ତି—

'ରାଜାମାନେ ରାଜନୀତି କରୁଥାନ୍ତୁ ଦଣ୍ଡ ସିଂହାସନେ ବସି
ଦୋଷକୁ ରହିଁ ବୁଝାମଣା କରନ୍ତୁ ହୃଦରେ ମହିମା ଘୋଷି
ଦୋଷକୁ ରହିଁ ଦଣ୍ଡ ନଦେଲେ କି ରୂପେ ଚଳିବ ପୃଥି,
ରଇତ ପରଜା କି ରୂପେ ମାନିବେ ବଶ ହୋଇଯିବା
ମତି ।

ଏ ପରିପ୍ରେକ୍ଷୀରେ ସେହି ଜଘନ୍ୟ ଜାତିପ୍ରଥା ବିରୋଧରେ ଗଣ ବିପ୍ଳବର ସୂଚନା ଦେଇଥିବା କବି ମତ୍ତ ବଳରାମ, ସମାଜର କୋଟି ଜନପ୍ରାଣୀଙ୍କୁ ନିଜସ୍ୱ ବୁଦ୍ଧି ବିବେକ ଓ ଜ୍ଞାନ ବଳେ ଜୀବନ ଚର୍ଯା କରିବା ପାଇଁ ପ୍ରବଚନ ଦେଇଥିବା ଅତିବଡ଼ ଜଗନ୍ନାଥ, ଗରୁଡସ୍ତମ୍ଭ ସନ୍ନିଧାନେ ରାଜ ଅତ୍ୟାଚାର-ରେ ରୁଧିରକ୍ତ ହୋଇଥିବା ଆତ୍ମାଭିମାନୀ ଭବ ବିହ୍ୱଳ କବି ଦୀନକୃଷ୍ଣଙ୍କ କବି ବ୍ୟକ୍ତିତ୍ୱ ସ୍ମରଣକୁ ଆସେ ।

କବି ଭୀମ ମନେ କରୁଥିଲେ, ଅନ୍ତରର ଆବେଗ ବଳରେ ମଣିଷ ଏ ବିଶ୍ୱବ୍ରହ୍ମାଣ୍ଡକୁ ଅନୁଭବ କରେ । ବିଶ୍ୱ ପ୍ରାଣତାର ବିପୁଳ ପ୍ରବଣତା ନଥିବା ମଣିଷଟି ଇତରଙ୍କ ପରି ଆତ୍ମ ରତିରେ କେବଳ ଘାର୍ଣ୍ଣି ହେଉଥାଏ । ବିଶ୍ୱକୁ ଦେଖିବା ବିଶ୍ୱାତ୍ମାଙ୍କୁ ଅନୁଭବ କରିବାର ପ୍ରଶସ୍ତ ଗବାକ୍ଷ ହେଉଛି ବ୍ୟକ୍ତିର ଅନ୍ତରଙ୍ଗ ଆତ୍ମା । ତାହା ବିଶ୍ୱଭବରେ ବିଗଳିତ ହେଲେ ବ୍ୟକ୍ତିର ଆତ୍ମା ଅନନ୍ତର ଉପଲବ୍ଧି କରେ । ପରମ ପୁରୁଷାର୍ଥ ବସ୍ତୁତଃ ସେହି ବିଶ୍ୱମନସ୍କତାରୁ ହିଁ ମିଳେ । ସମସ୍ତଙ୍କ ଠାରେ ସମଚିତ୍ତ ହେବା ପାଇଁ ସାର ଶାଶ୍ୱତର ଦାର୍ଶନିକ ଶଙ୍କର କହିଚନ୍ତି – 'ଭବ ସମଚିତ୍ତଃ ସର୍ବତ୍ର ତ୍ୱଂ । କବି ଭୀମଙ୍କ 'ଜଗତ ଉଦ୍ଧାର ହେଉ' ଉପଲବ୍ଧିଟି ସେହି 'ସର୍ବେ ଭବନ୍ତୁ ସୁଖୀନଃ' ଅନୁଭବର ଏକ ହାର୍ଦ୍ଦିକ ପ୍ରକାଶ ।

କ୍ଷୁଦ୍ରତାରୁ ମୁକ୍ତି ନ ପାଇଲେ ଜୀବନର ପ୍ରକୃତ ମୁକ୍ତି ନାହିଁ । କ୍ଷୁଦ୍ରତା କବଳରୁ ରକ୍ଷା ପାଇବାର ଏକମାତ୍ର ପନ୍ଥା ହେଉଛି ନିଜର ଆତ୍ମା ଦେଇ କ୍ରମଶଃ ମୃତ୍ୟୁ ପର୍ଯ୍ୟନ୍ତ ଅଧିକରୁ ଅଧିକତର ବିଶ୍ୱମୁଖି ହେବା । ଜଣେ ଯେପରି ନିଜକୁ ନିଜଠାରୁ ଘୁଞ୍ଚାଇ ନେଇ ପାରେ ନାହିଁ ସେହିପରି ବ୍ୟକ୍ତି ନିଜକୁ ବିଶ୍ୱଠାରୁ ଅଲଗା କରି ନେଇ ପାରେ ନାହିଁ । ସେ ନିଜସ୍ୱ ଚେତନା ଦେଇ ବିଶ୍ୱଭବର କଳନା କରେ; ବିଶ୍ୱ ଭ୍ରାତୃତ୍ୱର ଜୟଗାନ କରେ ।

ବିଶ୍ୱକୁ ନିଜ ଅନ୍ତରରେ ଅଭିଷିକ୍ତ କରିବାଠାରୁ ବଳି କୃବିଦ୍ୱ ଆଉ କିଛି ନାହିଁ । ସେହି ବିଶ୍ୱଭବ ପ୍ରବୋଧକ ହୃଦୟ ହିଁ ସତ୍ କବିତ୍ୱର ଉତ୍ସ । ଚର୍ଚ୍ଚ ଧର୍ମ ନାମରେ ଅନ୍ଧ ହୋଇ ଅନ୍ୟ ଧର୍ମର ମଣିଷଙ୍କ ପ୍ରତି 'ଅଶ୍ରଦ୍ଧ' ଓ ଅନୁଦାର ହେବାରୁ ଚର୍ଚ୍ଚକୁ ସେପାଇଁ ଅନେକ ବିଶ୍ୱପ୍ରେମୀ ବାଛନ୍ଦ କରିଥିଲେ ।

'ମୁ ଅଛି, ଏହା ମୁଁ ଜାଣେ । ମୁଁ ଦ୍ରଷ୍ଟା, ଜ୍ଞାତା, ଅନୁମନ୍ତା । ମୁଁ ସକ୍ରିୟ, ମୁଁ ସ୍ରଷ୍ଟା'— ଏମିତି ଅନୁଭବ ଜଣେ ବିଶ୍ୱ ଜୀବନ ଯାତ୍ରୀର କେବଳ ହୋଇଥାଏ । ତର୍କ ବୁଦ୍ଧିମୂଳକ ବିଜ୍ଞାନ (Rational Science) ଦ୍ୱାରା ମଣିଷ ଉଲ୍ଲିଖିତ ଉପଲବ୍ଧି କରି ପାରେନା । ମଣିଷର ଏହି ଅନୁପମ ବିଶ୍ୱ ମନସ୍କତାର ଉପଲବଧି ସେହି ତର୍କ ବୁଦ୍ଧିର ଉର୍ଦ୍ଧ୍ୱତମ ବିଷୟ । ବୁଦ୍ଧି ବା ଜ୍ଞାନ ବଳରେ ଜଣେ ସାର୍ବିକତା (Universality) କୁ ଉପଲବଧି କରି ପାରେନାହିଁ; କରେ ଉଦ୍‌ବୋଧିତ ଚିତ୍ତର ଆବେଗ ବଳରେ କେବଳ ଯାହା ଭୀମ କରିପାରୁ ଥିଲେ । କବିଙ୍କର ଏହି ବିଶ୍ୱଜୀବନ ପ୍ରତି ଉନ୍ମୁଖତା ତାଙ୍କ ଗ୍ରନ୍ଥାବଳୀର ଅନେକ ଧାଡ଼ିରେ ସୂଚିତ ହୋଇଛି ।

ଭୀମଙ୍କ ନୂତନ ସମାଜ ପରିକଳ୍ପନାକୁ ସେ-ଦିନର ରଜା ଓ ବ୍ରାହ୍ମଣମାନେ ଘୋର ବିରୋଧ କରିଛନ୍ତି । ଭୀମ ତେଣୁ ସମାଜର ପ୍ରଭାବଶାଳୀ ଲୋକଙ୍କ ସମର୍ଥନ ନପାଇ ବ୍ୟଥିତ ହୋଇଛନ୍ତି ।

'ପଞ୍ଚଭୂତ ଆତ୍ମା ଦଗଧି ହେଉଛି ଜୀବନ କାନ୍ଦୁଛି କିତି
ଅନ୍ୟାୟ ସଂସାର ଅନୀତି ଆଚାର ଦେଖି କଳିଯୁଗ
ରୀତି'

(ସ୍ତୁତି ଚିନ୍ତାମଣି)

ଦିବ୍ୟ ଯୁଗର ପ୍ରତିଟି ଯୁଗାଦର୍ଶ ଓ ଦିବ୍ୟଜୀବନ ସଂପର୍କରେ ସମାଜ ବିତାଡ଼ିତ କବି ଭୀମ ଭୋଇ ଯେଉଁ ସ୍ୱପ୍ନ ଦେଖିଥିଲେ ତା'ର ମହତ୍ତର ମାନବ ସଂପର୍କ ଦୃଷ୍ଟିରୁ ଏ ମାଟିର ବିପୁଳ ସାଂସ୍କୃତିକ, ସାମାଜିକ ତଥା ସାରସ୍ୱତ ଗତି ଧାରାରେ ତାଙ୍କ କବିତା ଅନେକ ମାନବବାଦୀଙ୍କ ପାଇଁ ଉଭୟ ପ୍ରେମ ଓ ବିପ୍ଳବର ମହାନ ବାଣୀ ହୋଇ ରହିଥିବ ।

ପ୍ରାଧ୍ୟାପକ
ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ
ସଂବଲପୁର ବିଶ୍ୱବିଦ୍ୟାଳୟ,
ଜ୍ୟୋତିବିହାର



# ଭକ୍ତ କବି ମଧୁସୂଦନ

ଡକ୍ଟର ଗଙ୍ଗାଧର ବଳ

ଓଡ଼ିଶାର ଦୁଇଜଣ ପ୍ରାତଃସ୍ମରଣୀୟ କବିଙ୍କ କଣ୍ଠର ଓଁକାର ନାଦରେ ଉତ୍କଳ ଭାରତୀ-କାନନ ମୁଖରିତ; ଜଣେ ହେଉଛନ୍ତି ଋଷିପ୍ରତିମ ଆଧୁନିକ ଓଡ଼ିଶାର ଶିକ୍ଷକ, ଉପଦେଷ୍ଟା ଭକ୍ତ କବି ମଧୁସୂଦନ ରାଓ, ଅନ୍ୟ ଜଣକ ହେଉଛନ୍ତି ସ୍ୱଭାବ କବି ଗଙ୍ଗାଧର ମେହେର । ଉଭୟଙ୍କର ଋଷି-ଆତ୍ମା ଓଡ଼ିଶାର ସହୃଦୟ ପାଠକମାନଙ୍କୁ ଚିରକାଳ ପାଇଁ ପୂତ ସରସ୍ୱତୀ ଓ ତମସାତୀରର ମନ୍ଦ୍ର ପ୍ରଣବ ଉଚ୍ଚାରଣ ସହ ବେଦ-ଧ୍ୱନି ଶୁଣାଇ ପୂତ ବିଶ୍ୱପ୍ରେମର ସ୍ରୋତସ୍ୱିନୀ ଛୁଟାଇ ଚାଲିଛି ।

ଶିଶୁମାନଙ୍କଠାରୁ ଆରମ୍ଭ କରି କିଶୋର, ଯୁବକ, ପ୍ରୌଢ଼, ଏପରିକି ବୃଦ୍ଧଙ୍କ ପର୍ଯ୍ୟନ୍ତ ମଧୁସୂଦନ ହେଉଛନ୍ତି ସମସ୍ତଙ୍କର ଶିକ୍ଷକ, ଉପଦେଷ୍ଟା । ତାଙ୍କର ବିଶ୍ୱ-ପ୍ରେମ ଓ ଭକ୍ତିସିକ୍ତ ବାଣୀର ଝଙ୍କାର ଏ ଅବଧି ଓଡ଼ିଶାର ଆକାଶ ପବନରେ, ସହୃଦୟ ପାଠକ ଓ ଶ୍ରୋତାଙ୍କ ଅନ୍ତରରେ ଅନୁରଣିତ । ଏବେ ମଧ୍ୟ ଯେ କୌଣସି ବିଦ୍ୟାଳୟର ଛାତ୍ରାବାସ ଓ ଆଶ୍ରମ-ବିଦ୍ୟାଳୟକୁ ପ୍ରଭାତ ଓ ସନ୍ଧ୍ୟାରେ ଚାଲିଗଲେ ପଥିକ ଶ୍ରୋତାର କର୍ଣ୍ଣରେ ବାଜେ କବି ଲେଖନୀ-ନିଃସୃତ ଦିବ୍ୟ ସ୍ତବ-ଧ୍ୱନୀ :—

'ସତ୍ୟ ପଥେ ଧର୍ମପଥେ ନେଇଯାଅ ମୋତେ',
ବା
'କୋଟି ଜଗତର ଘନ ଗଭୀରର ବିରଜ ହୃଦୟ
-ଗଗନେ ।'

ମଧୁସୂଦନଙ୍କର ସମଗ୍ର ରଚନା ମଧ୍ୟରେ ପାଠକ ଜଣେ ରସପ୍ରାଣ କଳାକାର (Artist) ଅପେକ୍ଷା ଜଣେ ଭକ୍ତି ପ୍ରବଣ ସାଧକ-କବିର ବ୍ୟକ୍ତିତ୍ୱ ଲକ୍ଷ୍ୟକରେ । ବିଶ୍ୱ ସୃଷ୍ଟିର ନିୟାମକ ପରମାତ୍ମାଙ୍କର ଅଙ୍ଗୁଳି-ନିର୍ଦ୍ଦେଶ ଲକ୍ଷ୍ୟକରି ନିଜର ହୃଦୟର ଆନନ୍ଦ ପ୍ରକାଶ କରିବା ସଙ୍ଗେ ସଙ୍ଗେ ପାଠକମାନଙ୍କୁ ସେଇ ଆନନ୍ଦର ଆସ୍ୱାଦନ ପାଇଁ ବ୍ୟାକୁଳତା ପ୍ରକାଶ କରିଛନ୍ତି । ଶିଶୁମାନଙ୍କ ଉଦ୍ଦେଶ୍ୟରେ ରଚିତ ତାଙ୍କର ଲୋକପ୍ରିୟ ପ୍ରଭାତ କବିତାର ପଙ୍କ୍ତିରେ ସେଇ ଭାବର କି କି ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତି ଘଟିଛି, ଲକ୍ଷ୍ୟ କରଯାଇ ପାରେ ଯଥା—

ବିହଙ୍ଗେ ଗାଇଲେ ସଙ୍ଗୀତ
ଆହା କି ମନୋହର,
ସେ ଗୀତ ଶ୍ରବଣେ ହୃଦୟ
ନାଚି ଉଠେ ମୋହର ।
ବିହଙ୍ଗ ସଙ୍ଗୀତେ ବାଳକେ
ଗାଅ ଆନନ୍ଦ ମନେ,
ହୃଦୟେ ସୁମରି ଜଗତ ପିତା
ସୃଷ୍ଟି କାରଣେ ।

ଏଠାରେ କବିଙ୍କର ଗୁରୁ ଓ ଉପଦେଷ୍ଟା-ସୁଲଭ ଅଭିମାନ ନାହିଁ, ବରଂ ରହିଛି ଶିଶୁସୁଲଭ ସରଳତା । ଶିଶୁ ସଙ୍ଗରେ ଶିଶୁ ହୋଇ ପ୍ରକୃତିର ସୌନ୍ଦର୍ଯ୍ୟ ଉପଲବ୍ଧି ପାଇଁ ନିଜର କୋମଳ କବି ପ୍ରାଣର ବ୍ୟାକୁଳତା ତଥା ଆନ୍ତରିକତା ପ୍ରକାଶ କରିଛନ୍ତି ।

ମଧୁସୂଦନ ଜଣେ କବି, ଶ୍ରେଷ୍ଠ ଅନୁବାଦକ; ସାହିତ୍ୟ, ଶିକ୍ଷା, ସମାଜ ଓ ଧର୍ମ ସଂସ୍କାରକ ଭବରେ ବିଗତ ଶତାବ୍ଦୀର ଶେଷ ଭାଗ ଓ ଏଇ ଶତକର ପ୍ରଥମ ଭାଗରେ ବିପୁଳ ପ୍ରତିଷ୍ଠାର ଅଧିକାରୀ । ବାଲ୍ୟକାଳରୁ ଜଣେ ମେଧାବୀ ଅଧ୍ୟବସାୟୀ ଓ ପ୍ରଖର ସ୍ମୃତି-ଶକ୍ତି ସମ୍ପନ୍ନ ଛାତ୍ର ଭାବରେ ତାଙ୍କର ଶିକ୍ଷକ ମାନଙ୍କର ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ଭାରତର ଉଜ୍ଜ୍ୱଳ ବୈଦିକ ଓ ସଂସ୍କୃତ ସାହିତ୍ୟ ବଙ୍ଗଳା, ହିନ୍ଦୀ, ମରାଠୀ, ଇଂରାଜୀ ସାହିତ୍ୟ; ଧର୍ମ, ଦର୍ଶନ, ଐତିହ୍ୟ ଓ ସଂସ୍କୃତି ପ୍ରତି ଅହୈତୁକୀ ଅନୁରାଗ ପ୍ରକାଶ କରି ଆସିଛନ୍ତି । ନିଜର ସାଧୁ ବ୍ୟବହାର; ମିଷ୍ଟାଳାପ, ବିନୟ, ସତ୍ୟନିଷ୍ଠା ଓ ଐକାନ୍ତିକ ଈଶ୍ୱର-ଭକ୍ତି ବଳରେ ନିଜର ଋଷି-ପ୍ରତିମ ବ୍ୟକ୍ତିତ୍ୱର ସ୍ୱତଃସ୍ଫୂର୍ତ୍ତ ବିନିଯୋଗ କରି ଆସିଛନ୍ତି । ଭାରତର ବିଶ୍ୱବନ୍ଦ୍ୟ ଆଧ୍ୟାତ୍ମିକ ପରମ୍ପରାର ଜଣେ ଯୋଗ୍ୟ ଦାୟାଦ ଭାବରେ ସେ ଆର୍ଷ-ପରମ୍ପରାର ଅନୁସରଣ ସହ ବୁଦ୍ଧଙ୍କର ସାର୍ବଜନୀନ ମାନବପ୍ରୀତି ଓ ମୈତ୍ରୀଭାବ ପ୍ରତି ଆନୁଗତ୍ୟ ପ୍ରକାଶ କରି ନିଜର ରଚନା ଓ ବାଣୀର ବିଶ୍ୱୈକଭାବନା ସଂପର୍କରେ ଦୃଢ଼ ବିଶ୍ୱାସ ଓ ନିର୍ଭରତା ପ୍ରକାଶ କରି ଚାଲିଛନ୍ତି ।

ଅନନ୍ତ ଆକାଶ, ତା'ର ଅଗଣିତ ଗ୍ରହ ଜ୍ୟୋତିଷ୍କ, ଦିଗନ୍ତ ବିସ୍ତୃତ ମହାସାଗରର ନୀଳ ଜଳରାଶି ଏବଂ ବିଶ୍ୱର ବୈଚିତ୍ର୍ୟମୟୀ ପ୍ରକୃତିରେ ଅନାଦି ଅନନ୍ତ ପରମେଶ୍ୱରଙ୍କର ଅଲକ୍ଷ୍ୟ କ୍ରିୟା-ଶୀଳତାର ଯେଉଁ ସଙ୍କେତ ଅନ୍ତରେ ଅନ୍ତରେ ଉପଲବ୍ଧି କରିଛନ୍ତି, ପ୍ରତ୍ୟେକ ରଚନାରେ କବି ତା'ର ବ୍ୟଞ୍ଜନା ଦେବାରେ ସ୍ୱତଃସ୍ଫୂର୍ତ୍ତ ଅନୁରାଗ ପ୍ରକାଶକରି ଚାଲିଛନ୍ତି । ଉପନିଷଦର 'ଅଣୋରଣୀୟାନ୍ ମହୋତୋମହୀୟାନ୍' ପରଂବ୍ରହ୍ମଙ୍କର ଅନୁଭବ ତାଙ୍କ ପ୍ରାଣକୁ ଉଦ୍‌ବେଳିତ କରିଛି । ସଂସ୍କାର--ମୁଖ୍ୟ କାଳରେ ସେ ବ୍ରାହ୍ମ ଧର୍ମ ଦୀକ୍ଷା ଗ୍ରହଣ କରି ଏକେଶ୍ୱର ବାଦ ପ୍ରତି ଐକାନ୍ତିକ ନିଷ୍ଠା ପ୍ରକାଶ କଲେ ମଧ୍ୟ ହିନ୍ଦୁ ଧର୍ମ ଓ ଅନ୍ୟାନ୍ୟ ଧର୍ମ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନରେ କୁଣ୍ଠା ପ୍ରକାଶ କରିନାହାନ୍ତି ।

ବିଦ୍ୟାଳୟରେ ଶିକ୍ଷକତା ଓ ଶିକ୍ଷା ବିଭାଗରେ ନିରୀକ୍ଷକ ଭାବରେ ସେବା ତାଙ୍କର ବୃତ୍ତିଥିଲେ ମଧ୍ୟ ମଧୁସୂଦନ ଆଜିର ଅଧିକାଂଶ ଶିକ୍ଷକ ଓ ଶିକ୍ଷା–ସେବୀଙ୍କ ପରିବୃତ୍ତି-ସର୍ବସ୍ୱ ନଥିଲେ । ନିଜର କର୍ମମୟ ଜୀବନର ପ୍ରତ୍ୟେକ ସ୍ତର ଓ ଅବସ୍ଥାକୁ ସେ ନିଜର୍ କବିତ୍ୱର ବିକାଶ ଓ ଶିକ୍ଷୋନ୍ନତି ଦିଗରେ ଯେପରି ଉପଯୋଗକରି ଯାଇଛନ୍ତି, ତାହା ସାମ୍ପ୍ରତିକ ପରିପ୍ରେକ୍ଷୀରେ ବିଲକ୍ଷଣ । ଶିକ୍ଷାର ପ୍ରସାର ନିମିତ୍ତ ସେ ବିଦ୍ୟାଳୟ ପ୍ରତିଷ୍ଠା ସହ ଶିକ୍ଷା–ସମ୍ମିଳନୀମାନ ନିୟମିତ ଭାବରେ ଅନୁଷ୍ଠିତ କରାଇ ଆସିଛନ୍ତି ଏବଂ ଯଥାର୍ଥ ଶିକ୍ଷାଦାନ ନିମିତ୍ତ ଶିକ୍ଷକ-ବନ୍ଧୁ ଶିର୍ଷକ ମାସିକ ପତ୍ରିକା ପ୍ରବର୍ତ୍ତନ ସହ ଶିକ୍ଷକ ବନ୍ଧୁ, ଶିକ୍ଷକ ସହଚର ନାମକ ପୁସ୍ତକ ପ୍ରଣୟନ କରିଛନ୍ତି । ଯେଉଁ ଛାତ୍ରମାନେ ଦେଶ ଓ ଦଶର ଭବିଷ୍ୟତ ନିଜର କବିତା ଜରିଆରେ ସେମାନଙ୍କର ଚରିତ୍ର ଗଠନ, ବିନୟ ଓ ସ୍ୱଦେଶ ପ୍ରୀତି ଉପରେ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ତା'ର ଆଚରଣ ଉପରେ ଅନ୍ତରଙ୍ଗ ଧ୍ୟାନ ଦେଉଥିଲେ । ଅଧସ୍ତନ ଶିକ୍ଷକ ଓ ଛାତ୍ରଙ୍କ ପ୍ରତି ତାଙ୍କ ଅନ୍ତରର ଶ୍ରଦ୍ଧା, ସୁହୃଦ୍ ମନୋଭାବ ତାଙ୍କୁ ଛାତ୍ର ଓ ଶିକ୍ଷକଙ୍କର ଅତି ପ୍ରିୟ କରିଥିଲା ।

ମଧୁସୂଦନ ତାଙ୍କର ପାଠ୍ୟପୁସ୍ତକ ମାନଙ୍କରେ ଛାତ୍ରମାନଙ୍କୁ ଚରିତ୍ର ଗଠନ ସମ୍ପର୍କରେ କେବଳ ନିରସ ଉପଦେଶ ପ୍ରଦାନ କରି ଯାଇନାହାନ୍ତି । ସେ ଜୀବନରେ ଯାହା ସତ୍ୟ, ସୁନ୍ଦର ଓ କଲ୍ୟାଣ କର ବୋଲି ଅନୁଭବ କରିଛନ୍ତି, ତାହା ନିଜର ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନରେ ପ୍ରୟୋଗ କରିଯାଇଛନ୍ତି । ସେଥିଲେ ସ୍ନେହ, ସରଳତା, କୋମଳତା ଓ କମନୀୟତାର ମୂର୍ତ୍ତିମନ୍ତ ବିଗ୍ରହ । ମହାତ୍ମାଗାନ୍ଧୀଙ୍କ ପରି ମଧୁସୂଦନ ଙ୍କର ଜୀବନ ଥିଲା ବାସ୍ତବରେ ସତ୍ୟର ଅନ୍ତରଙ୍ଗ ପ୍ରୟୋଗ । ସମାଜରେ ଶିକ୍ଷକ, ପିତାମାତା ଗୁରୁଜନ, ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ପ୍ରତି ସମ୍ମାନ ଓ ଭକ୍ତି, ସହାଧ୍ୟାୟୀଙ୍କ ପ୍ରତି ସତ୍ ଓ କୋମଳ ବ୍ୟବହାର, ନମ୍ରତା, ଦୀନ ଦୁଃଖି ଓ ଜୀବଙ୍କ ପ୍ରତି ଦୟା, ଅତିଥିସେବା, ସତ୍ୟାନୁରାଗ, ଧର୍ମନିଷ୍ଠା, ସ୍ୱଦେଶ–ପ୍ରୀତି, ବିଶ୍ୱସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ଗଭୀର ଭକ୍ତି ଓ ବିଶ୍ୱାସ, ସଦାଚରଣ, ଭ୍ରାତୃଭଗିନୀଙ୍କ ପ୍ରତି ସ୍ନେହ ଆଦି ସଦ୍‌ଗୁଣ ଗୁଡକର ବିକାଶରେ ଯେ ସାମାଜିକ ଓ ପାରିବାରିକ ଜୀବନ ମଧୁମୟ ହୁଏ, ଜୀବନ ସେଥିରେ ସାର୍ଥକ ହୁଏ, ଅଜସ୍ର ନୀତି ପ୍ରଧାନ କବିତାରେ କବି ତା'ର ସୂଚନା ଦେଇଛନ୍ତି, ଯଥା–

କ) ବୈକୁଣ୍ଠ ସମାନ ଆହା ଅଟେ ସେହି ଘର,
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।
(ପରିବାର ଗଳ୍ପାବଳୀ, ପୃ-୧୩)

× × ×

ପିତାମାତା ପରି ଆଉ କେ ଅଛି ସଂସାରେ
ଧନ୍ୟ ସେ ଯେ ଦିଏ ପ୍ରାଣ ତାଙ୍କରି ସେବାରେ ।
(ତୈ୍ରବ)

ଖ) ସ୍ୱ ଦେଶେ ସ୍ୱ ଗୃହ ସ୍ୱରଗ ସମାନ,
ଦେଶହିତେ ଗୃହହିତେ ଲଗାଇବି ପ୍ରାଣ ।
(ମଣିମାଳା, ଗ୍ରଂ ପୃ ୭୩)

ଗ) ବାକ୍ୟରେ ମନରେ କି ଅବା କର୍ମରେ
ନ କରିବି ପାପାଚାର,
ତେଜିବି ଅବଶ୍ୟ ହିଂସା କପଟତା
ଲୋଭ କ୍ରୋଧ ଅହଙ୍କାର ।
(ଧର୍ମଗଳ୍ପ ପୃ-୭୩)

ଶିକ୍ଷା ପ୍ରଦାନ, ସମାଜ ସଂସ୍କାର, ଧର୍ମପ୍ରଚାର, ମାତୃଭାଷା ଓ ସାହିତ୍ୟର ସେବାଥିଲା ତାଙ୍କ ସାଧକ ଜୀବନର ଆକର୍ଷଣୀୟ ବୈଶିଷ୍ଟ୍ୟ । କବିଙ୍କ ଭାଷାରେ–

ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ
ଏ ମାନବ ଜନ୍ମହେଉ ସଫଳ ମୋହର
ଏ ଭିକ୍ଷା କରନ୍ତୁ ପ୍ରଭୁ ପୂର୍ଣ୍ଣ ମହେଶ୍ୱର ।
(ଗଳ୍ପାବଳୀ ପୃ-୪୮)

ମଧୁସୂଦନ ମୁଖ୍ୟତଃ ଛାତ୍ର ମାନଙ୍କ ନିମିତ୍ତ ପାଠ୍ୟ ପୁସ୍ତକ ରଚନା କଲେ ମଧ୍ୟ ତନ୍ମଧ୍ୟସ୍ଥ ଏକ ଏକ କବିତାର ଯେପରି ଉଚ୍ଚଙ୍ଗ ସାହିତ୍ୟିକ ମୂଲ୍ୟ ରହିଛି ସେ ଦୃଷ୍ଟିରୁ ସେ ଗୁଡ଼ିକୁ କ୍ଲାସିକ୍ କହିଲେ ଅତ୍ୟୁକ୍ତି ହେବ ନାହିଁ । (୧); କିନ୍ତୁ ଅଧିକାଂଶ ରଚନା ଯେହେତୁ ନୀତି, ଉପଦେଶ ଓ ଭକ୍ତି ପ୍ରଧାନ ସେଥିରେ କାବ୍ୟଶିଳ୍ପ-ସୌଷ୍ଠବ ଓ ରସୋତ୍ତୀର୍ଣ୍ଣତାର ଅଭାବ ଲକ୍ଷିତ ହେବା ସ୍ୱାଭାବିକ । ସାଧକ ଶିଳ୍ପ ସ୍ରଷ୍ଟା ଭାବରେ କାବ୍ୟନୀତି ଓ ଅନୀତି ବିଚାରର ଊର୍ଦ୍ଧ୍ୱରେ, କିନ୍ତୁ ମଧୁସୂଦନ ସତ୍ୟ ଓ ଶିବର ଉପାସକ ହେଲେ ମଧ୍ୟ ସୁନ୍ଦର ସମ୍ପର୍କରେ ଯଥାର୍ଥ ଉଦାରତା ପ୍ରଦର୍ଶନ କରିପାରି ନାହାନ୍ତି । କେତେକ ସମାଲୋଚକ ତାଙ୍କୁ ଆଗେ ଭକ୍ତ, ତା'ପରେ କବି ବୋଲି ବିଚାର କରିଛନ୍ତି ।

ମଧୁସୂଦନ କାବ୍ୟ ଓ ମହାକାବ୍ୟର ସ୍ରଷ୍ଟା ନ ହେଲେ ମଧ୍ୟ ଇଂରାଜୀ Lyric ବା ଗୀତି କବିତା ଆଦର୍ଶରେ ବହୁ ଗୀତି କବିତା, ଚତୁର୍ଦ୍ଦଶପଦୀ କବିତା (Sonnet) ସମ୍ବୋଧନାତ୍ମକ ଗୀତି (Ode) ଓ ବିଷାଦ ବା ଶୋକ ଗୀତି (Elegy) ରଚନା କରିଛନ୍ତି । ତାଙ୍କର କ୍ଷୁଦ୍ରାବୟବ ବିଶିଷ୍ଟ ଗୀତି କବିତା କୌଣସି କୌଣସି ଏକ ଏକ ନିର୍ଦ୍ଦିଷ୍ଟ ଭାବ, ଚିନ୍ତା ଓ ଚରିତ୍ର କେନ୍ଦ୍ରିକ ହେଲେ ମଧ୍ୟ ସେଗୁଡ଼ିକର ଚିତ୍ରାତ୍ମକତା ଓ ବର୍ଣ୍ଣନା କୁଶଳତା ପାଠକଙ୍କୁ ମୁଗ୍ଧ କରେ । ତାଙ୍କର ସ୍ତବ, ଧ୍ୱନି, ପୃଥିବୀ ପ୍ରତି, ସନ୍ଧ୍ୟା, ଋଷିପ୍ରାଣେ ଦେବାବତରଣ ଓ ଋତୁଚିତ୍ର ପ୍ରଭୃତିର ସଂଯତ ମାଧୁର୍ଯ୍ୟ ତାଙ୍କର କବି ପ୍ରତିଭାର ଯଥାର୍ଥ ପରିପ୍ରକାଶ ।

ବିଭିନ୍ନ ଶ୍ରେଣୀର କବିତା ସଂପର୍କରେ ସଂକ୍ଷିପ୍ତ ଆଲୋଚନା କରାଯାଉଛି ।

## ଶିଶୁକବିତା :

ଶିଶୁପାଠ୍ୟ ଉଦ୍ଦେଶ୍ୟରେ ରଚିତ କବିତା ଗୁଡ଼ିକ ସରଳ ଛନ୍ଦରେ, ସରଳ ସୁବୋଧ୍ୟ ଭାଷା ଓ ଭଙ୍ଗୀରେ ରଚିତ । କବିତା ଗୁଡ଼ିକ ଶିଶୁ ସୁଲଭ ସ୍ନେହ ସରଳତା, ଆନନ୍ଦ ଓ ମାଧୁର୍ଯ୍ୟରେ ରସାଣିତ ହୋଇଥିବାରୁ ସେ ଗୁଡ଼ିକରେ ଆମେ ତାଙ୍କର ଶିଶୁସୁଲଭ କୋମଳ ଅନ୍ତରର ସାର୍ଥକ ପରିଚୟ ପାଉଁ (୨) ।

ଆଧୁନିକ ଉତ୍କଳର ପ୍ରଥମ ଶିକ୍ଷାଗୁରୁ ଏବଂ ଶିଶୁସାହିତ୍ୟ ସ୍ରଷ୍ଟା ହୋଇଥିବାରୁ କବିତା ଗୁଡ଼ିକରେ ଆମେ ତାଙ୍କୁ ଶିକ୍ଷକ ଓ ଉପଦେଷ୍ଟାର ଭୂମିକାରେ ଦେଖିବାକୁ ପାଉଁ । ବିଶ୍ୱପ୍ରକୃତିର କୋଣେ କୋଣେ ସେ ଭଗବତ କୃପା ଅନୁଭବ କରି ଶିଶୁ ମାନଙ୍କର ଅନ୍ତରକୁ ସେଇ ଭାବରେ ଅନୁପ୍ରାଣିତ କରିବାର ଚେଷ୍ଟା କରିଛନ୍ତି । କବିତା ଗୁଡ଼ିକ ମଧ୍ୟରେ ସୁନ୍ଦର ସଂସାର; ପରମେଶ୍ୱର, ସ୍ତବ, ପ୍ରଭାତ, ଜନ୍ମ-ମରଣ, ପରିଶ୍ରମ, ଧର୍ମ ଓ ଷଡ଼ଋତୁ ସମ୍ପର୍କିତ କବିତା ଉଲ୍ଲେଖ ଯୋଗ୍ୟ ।

ତାଙ୍କର ଋତୁ କବିତା ଗୁଡ଼ିକ ଉତ୍କଳର ବିଭିନ୍ନ ଋତୁ ପ୍ରକୃତିର ଓ ପଲ୍ଲୀ ଜୀବନର ବାସ୍ତବ ଅଥଚ ମଞ୍ଜୁଳ ଚିତ୍ରଧର୍ମୀ ଅଭିବ୍ୟକ୍ତି । ବସନ୍ତ କବିତାରେ ପଲ୍ଲବ ଓ ପୁଷ୍ପ ସ୍ତବକ ମଣ୍ଡିତ ଅଶୋକ ଡାଳଦୀବସନ୍ତ, ରକ୍ତବର୍ଣ୍ଣ ପଳାଶ ବନ, ନବୀନ-ପଲ୍ଲବ ଓ ବକୁଳ ମଞ୍ଜରୀ ଶୋଭିତ ରସାଳ ଶାଖାରେ କୋକିଳର କୁହୁଧ୍ୱନି; ଗ୍ରୀଷ୍ମରେ ସୁଦୂର ପ୍ରାନ୍ତରରେ ମୃଗତୃଷ୍ଣା ଦର୍ଶନରେ ପଥିକ ଦୃଷ୍ଟିରେ ନୀଳ ଜଳଭ୍ରାନ୍ତ; ବର୍ଷାରେ ପୀତକ୍ଷଣ ପୁଷ୍ପର ଶୋଭା, ଶୁଭ୍ର ନିର୍ଝର ଶୋଭିଦି ଶୈଳ ମସ୍ତକରେ ବିଜୁଳି-ହୀରଶୋଭିତ ଶୁଭ୍ର ମେଘର ମୁକୁଟ; ଶରତ୍‌ରେ ଶୁଭ୍ରକାଶତର୍ଣ୍ଣି ଫୁଲର ଶୋଭା, ହେମନ୍ତରେ

(୧) ମଧୁସୂଦନ ଗ୍ରନ୍ଥାବଳୀ, ପୃ ୬୨.
(୨) ତତ୍ରୈବ : ପୃ-୬୨.

ପଲ୍ଲୀଶ୍ରୀର ଜୀବନ୍ତ ଆଲେଖ୍ୟ ଅତିବ ହୃଦୟଗ୍ରାହୀ (୩) । ଋତୁ ପ୍ରକୃତିର ବର୍ଣ୍ଣନା, ଉପମା ରୂପକ, ଉତ୍ପ୍ରେକ୍ଷାଦି କେତୋଟି ସ୍ୱାଭବିକ ଅଳଙ୍କାର ପ୍ରୟୋଗ ଅତି ପ୍ରାଞ୍ଜଳ, ମନୋଜ୍ଞ ଓ ସ୍ପଷ୍ଟ ।

**ଗୀତୀ କବିତା :**

ତାଙ୍କର ଗୀତି କବିତା ମଧ୍ୟରେ ପଦ୍ମ, ଶରତ୍ ପ୍ରଭାତ୍, ନଦୀ ପ୍ରତି, ସୀତା ବନବାସ, ପୃଥିବୀ ପ୍ରତି, ନିର୍ବାସିତର ବିଳାପ, ଶୋଭା, ଧ୍ୱନି; ଆକାଶ ପ୍ରତି ପ୍ରଭୃତି ' ବର୍ଣ୍ଣନାତ୍ମକ କବିତା; ଚତୁର୍ଦ୍ଦଶ ପଦୀ (ସନେଟ୍) ବସନ୍ତଗାଥାର କେତେକ କବିତା, ଉତ୍କଳ ଗାଥା, କୁସୁମାଞ୍ଜଳିର ଋଷିପ୍ରାଣେ ଦେବାବତରଣ, ହିମାଚଳେ ଉଦୟ ଉତ୍ସବ, ନବ ବସନ୍ତ ଭାବନା, ଏ ସୃଷ୍ଟି ଅମୃତମୟ ହେ, ଭାରତ ଭାବନା, ନବଯୁଗର ଅଭିଷେକ ପ୍ରଭୃତି ଭାବ ପ୍ରଧାନ ଓ ବୈରାଗ୍ୟ ଚେତନା ଭିତ୍ତିକ ଆଧ୍ୟାତ୍ମିକ କବିତା ଉଲ୍ଲେଖ-ଯୋଗ୍ୟ ।

ବର୍ଣ୍ଣନାତ୍ମକ କବିତା ଗୁଡକ ମଧ୍ୟରେ ବିଭିନ୍ନ ଚିତ୍ର (ଚିତ୍ରାତ୍ମକତା) ରହିଥିଲେ ମଧ୍ୟ ଏକ କେନ୍ଦ୍ରିକ ବସ୍ତୁ, ଭାବ ଓ ଚରିତ୍ର ପ୍ରତି କବି ଚିତ୍ତର ଏକ ମୁଖୀନତା ଲକ୍ଷ୍ୟ କରିବାର ବିଷୟ । କ୍ଷୁଦ୍ର ବର୍ଣ୍ଣନା-ତ୍ମକ କବିତା ଗୁଡକରେ କବିଙ୍କର ବର୍ଣ୍ଣନା କୁଶଳତା ପାଠକ ପ୍ରାଣରେ ଆନନ୍ଦର ଆଲୋଡନ ସୃଷ୍ଟିକରେ । ରବିନ୍ଦ୍ରନାଥଙ୍କର ନିର୍ଝରେର ସ୍ୱପ୍ନଭଙ୍ଗ' କବିତାର ପ୍ରେରଣା ନଦୀପ୍ରତି କବିତା ମୂଳରେ ରହିଥିଲେ ମଧ୍ୟ ଚିତ୍ରଗୁଡ଼କର ବର୍ଣ୍ଣନାରେ କବିଙ୍କର ସ୍ୱକୀୟ ଅନୁଭୂତି ଓ ଆତ୍ମୀୟତା ଲକ୍ଷ୍ୟ କରିବାର ବିଷୟ ଯଥା—

କାହିଁ ନଉଡ ଧରି ଚରାଏ ଗୋ ବାଛୁରୀ
ଗଉଡ, ମୁରଲି ବଜାଇ,
କାହିଁ ଧାନ ଅମଳ କରଇ କୃଷୀବଳ
ଖଳାରେ ବେଙ୍ଗଳା ପକାଇ ।
(ନଦୀପ୍ରତି ଗ୍ରନ୍ଥାବଳୀ ପୃ-୨୧)

ଶୁଭ୍ରଶରତ୍ ପ୍ରତି କବି ଚିତ୍ତର ଦୁର୍ବଳତା ତାଙ୍କର ଶରତ ପ୍ରଭାତ କରିତାରେ ପରିସ୍ଫୁଟ । ଚିତ୍ର ଗୁଡକ ଯେପରି ସରସ, ସେହିପରି ସୁନ୍ଦର ଓ ପ୍ରାଣସ୍ପର୍ଶୀ, ଯଥା—

କାଖେ ଘେନି ସଲିଳ କଳସ
ପଲ୍ଲୀ ସୀମନ୍ତନୀ ଗଣ ରଙ୍ଗେ କରନ୍ତ ଗମନ
ଅନାଇ ଜଳ-ଦର୍ପଣେ ମୁଖ-ତାମରସ
ମୁଗ୍‌ଧହୋଇ ନିଜରୂପେ ଲଭନ୍ତ ହରଷ ।
(ମ.ସୂ. ଗ୍ରନ୍ଥାବଳୀ, ପୃ-୪୩)

ଭାରତୀୟ ସଂସ୍କୃତି, ଅଧ୍ୟାତ୍ମ ଭାବ ପ୍ରେରଣା ଓ କବି କଳ୍ପନାର ମନୋଜ୍ଞ ପୁଷ୍ପ ପଦ୍ମ କବିଙ୍କ ଅନ୍ତରରେ ଯେଉଁ ଦିବ୍ୟଭାବର ଆଲୋଡନ ସୃଷ୍ଟି-କରିଛି, ପାଠକ ପ୍ରାଣରେ ତାହା ଅନୁରୂପ ପୂତ ସାତ୍ତ୍ୱିକ ଆନନ୍ଦ ରସର ତରଙ୍ଗ ସୃଷ୍ଟିକରେ, ଦୃଷ୍ଟାନ୍ତ ସ୍ୱରୂପ—

(୩) (କ) ଏକାଳେ ଗିରିଶୋଭା ନୟନ ହରେ
ମଣ୍ଡିତ ଶୈଳ ଦେହ ଶୁଭ୍ରନିର୍ଝରେ ।
ଶୁଭ୍ରମେଘ-ମୁକୁଟ ଶୋଭେ ମସ୍ତକେ,
ତହିଁ ପୁଣି ବିଜୁଳି-ହୀରା ଝଟକେ । (ବର୍ଷା, ଗ୍ରନ୍ଥାବଳୀ, ପୃ ୭-୮)

(ଖ) ପକ୍ୱଶାଳି ପୂର୍ଣ୍ଣ କେଦାର ଦେଖି କୃଷକ ଗଣେ,
ଗୀତଗାଇ ଶସ୍ୟ କାଟନ୍ତ ଅତି ପ୍ରଫୁଲ୍ଲ ମନେ ।
ଖଳା କରି ଗ୍ରାମ ସୀମାରେ ଧାନ ଅମଳ କରି ,
ଗୃହକୁ ନିଅନ୍ତ ଆନନ୍ଦେ ବିଭୁଦୟା ସୁମରି । (ହେମନ୍ତ, ଗ୍ରଂ. ବ., ପୃ-୮)

ଅନନ୍ତ ମହେଶ୍ୱର ମୋ ପ୍ରାଣ ସାଇଁ
ବୋଲି ଗର୍ଜୀବ ସଦା ଥିବି ଅନାଇଁ
ଶିଖାଅ ମୋତେ ସଦା ଏ ପୁଣ୍ୟବ୍ରତ,
ତୋର ଆଶିଷେ ପୂରୁ ଏ ମନୋରଥ ।

(ପଦ୍ମ ଛାଦମାଳା ଗ୍ରନ୍ଥାବଳୀ, ପୃ-୨୬)

ଏ ବିଶ୍ୱ ବ୍ରହ୍ମାଣ୍ଡରେ ଉଠୁଥିବା ଅଜସ୍ର ଶୋଭର (୪) ତରଙ୍ଗର ଦର୍ଶନ ବିଶ୍ୱର ଅଜସ୍ର ଧ୍ୱନିର ଅନ୍ତରାଳରେ ଅନ୍ତରରେ ଉତ୍ଥିତ ଅନାହତ ନାଦର ଶ୍ରବଣ ପାଇଁ କବି ପ୍ରାଣର ବ୍ୟାକୁଳତା ତାଙ୍କର 'ଶୋଭ' ଓ ଧ୍ୱନି' ପ୍ରଭୃତି କବିତାରେ ପରିସ୍ଫୁଟ ହୋଇ ସେଇ ଶୋଭର ଦର୍ଶନ ଓ ଅନାହତ ଧ୍ୱନିର ଶ୍ରବଣ ପାଇଁ ବିଶ୍ୱମାନବଙ୍କୁ ତାଙ୍କର ଉଦ୍‌ବୋଧନ କମ ଆନନ୍ଦଦାୟକ ନୁହେଁ । କବିଙ୍କ ଭଷାରେ—

କହନ୍ତ ସେ ବାଣୀ, ଉଠ ଉଠ ବତ୍ସ,
ଅନାଅରେ ବାରେ ମୋତେ,
ଅନନ୍ତ ପ୍ରେମରେ ନିତ୍ୟ ଆଲିଙ୍ଗନେ
ଧରିଅଛି ସଦା ତୋତେ ।

କାହିଁ ଯାଉଛୁ ତୁ କି ଶବ୍ଦ ପଛାତେ
ବୁଲୁଛୁରେ ହୋଇ ବାଇ
ଅଶବ୍ଦ ଶବଦ ମୁଁ ତୋ ପ୍ରାଣେ ଅଛି
ଶୁଣ ଶୁଣ ସଦା ଧ୍ୟାୟି ।

(ଧ୍ୱନି, ଗ୍ରନ୍ଥ ପୃ-୨୪

ଜାଗତିକ କାମନା ବାସନା କ୍ଷୁବ୍ଧ ମଣିଷର ପ୍ରାଣ ବଡ ସଂକୁଚିତ, ବଡ କ୍ଷୁଦ୍ର । କବି ପ୍ରାଣ ଏ ସଂସାରର କ୍ଷୁଦ୍ରତାରେ, ଅଳ୍ପତାରେ ସୀମିତ ନ ହୋଇ ତେଜୋରାଶି ସୂର୍ଯ୍ୟଙ୍କର ପ୍ରକାଶ ଓ ଅଗଣିତ ବିଶ୍ୱବ୍ରହ୍ମାଣ୍ଡର ଆବିର୍ଭାବ ଘଟିଥିବା ଏ ପ୍ରଶାନ୍ତ ଆକାଶ ଦର୍ଶନରେ କବିଚିତ୍ତରେ ଯେଉଁ ଋଷିସୁଲଭ ମହାଭାବର ଉଦ୍ରେକ ହୋଇଛି, ତା'ର ଅଭିବ୍ୟକ୍ତିରେ କବିଙ୍କର ଧ୍ୟାନପୂତ ଆତ୍ମା କିପରି ଦିବ୍ୟ ପ୍ରେମା-ବେଶରେ ଆତ୍ମହରା, ଲକ୍ଷ୍ୟ କରଯାଉ—

ମୁହୂର୍ତ୍ତକେ ଘେନୁ ମୋତେ ରେ ମହାଗଗନ,
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦେ,
ମହା ପ୍ରେମାବେଶେ ଅଶ୍ରୁ ବର୍ଷେ ମୋ ନୟନ,
ଲଭଇ ମୁଁ ସ୍ୱରଗର ଆନନ୍ଦ ସମ୍ପଦେ ।

(ଆକାଶ ପ୍ରତି ଗ୍ରଂ, ପୃ. ୬୦)

(୪) ଅନନ୍ତ ଗଗନେ ସଦା ବିହରି
ବିଳସଇ ଶୋଭ ଦିବା ଶର୍ବରୀ ।
ଦିବସ ଯାମିନୀ ଗଗନ ପଟେ
କେତେ କେତେ ନବ ଛବି ପ୍ରକଟେ ।

× × ×

ପ୍ରଦୋଷରେ ଶୋଭ-ରାଣୀର ମାୟା
ଆଲୋକ ସଙ୍ଗତେ ତାମସୀ ଛାୟା
ମିଳାଏ କୌତୁକେ ବିବାହ ଛଳେ,
ସେ ଗୂଢ ରହସ୍ୟ ବଚନ ବଳେ ।

(ଶୋଭ, ଗ୍ରଂ, ପୃ. ୨୨-୨୩)

ସୀତାବନବାସ କାଳିଦାସଙ୍କର ରଘୁବଂଶର ଚତୁର୍ଦ୍ଦଶ ସର୍ଗ ଅବଲମ୍ବନରେ ଲିଖିତ ହେଲେ ମଧ୍ୟ ଏବଂ କ୍ରୌଞ୍ଚ-ବଧରେ ବାଲ୍ମୀକିଙ୍କର ଶୋକ ଶ୍ଳୋକରୂପ ଗ୍ରହଣ କରିବାର କଳ୍ପନା ରଘୁବଂଶରୁ ଅବିକଳ ଗୃହୀତ ହୋଇଥିଲେ ମଧ୍ୟ (୫) ସମଗ୍ର କବିତାଟି କବିଙ୍କର ବର୍ଣ୍ଣନା କୁଶଳତାର ଅପୂର୍ବ ସ୍ୱାକ୍ଷର ବହନ୍ କରିଛି । ସୀତାଙ୍କର ବିଳାପ ବର୍ଣ୍ଣନାରେ କରୁଣ ରସର ବ୍ୟଞ୍ଜନା ପାଠକର ଅନ୍ତରରେ ଅନୁରୂପ, ବେଦନାର ତରଙ୍ଗ ସୃଷ୍ଟି କରେ (୬) । କବିଙ୍କର 'ନିର୍ବାସିତର ବିଳାପ' ଇଂରାଜି କବି Cowperଙ୍କର ode on solitude ର ଅନୁବାଦ ହେଲେ ମଧ୍ୟ କବିଙ୍କର ପ୍ରତିଭା ଓ ଭାଷା ପ୍ରୟୋଗ କୁଶଳତାରେ ତାହା ମୌଳିକ ରଚନାର ଭ୍ରାନ୍ତି ଜାତ କରେ ।

**ଭାବପ୍ରଧାନ ଓ ଆଧ୍ୟାତ୍ମ ଚେତନା ଭିତ୍ତିକ କବିତା :**

ବିଶ୍ୱସୃଷ୍ଟି, ପ୍ରକୃତି ଓ ମାନବ ଜୀବନ ସମ୍ପର୍କରେ କବିଙ୍କର ଗଭୀର ଭାବ ଓ ଚିନ୍ତାଶୀଳତା, ଦାର୍ଶନିକ ତଥା ଆଧ୍ୟାତ୍ମ ଦୃଷ୍ଟିଭଙ୍ଗୀ ତାଙ୍କର ଭାବ ପ୍ରଧାନ ଓ ଆଧ୍ୟାତ୍ମ ଚେତନା ଭିତ୍ତିକ କବିତା ଗୁଡ଼ିକର ବୈଶିଷ୍ଟ୍ୟ । କବିଙ୍କର ନିଗୂଢ଼ ଧ୍ୟାନମୂର୍ତ୍ତିର ଅଭିବ୍ୟଞ୍ଜନା ସହୃଦୟ ପାଠକ ଚିତ୍ତରେ ଆଲୋଡ଼ନ ସୃଷ୍ଟି କରେ । ଭାବାନୁରୂପ ଭାଷା, ଯଥୋଚିତ ପଦବିନ୍ୟାସ ଓ ମନୋଜ୍ଞ ପ୍ରକାଶ ଭଙ୍ଗୀରେ କବିତା ଗୁଡ଼ିକ କ୍ଲାସିକ୍ ମର୍ଯ୍ୟାଦା ଲାଭକରିଛି । ତାଙ୍କର କୁସୁମାଞ୍ଜଳିରେ ଅନ୍ତର୍ଭୁକ୍ତ ନବବସନ୍ତ ଭାବନା, ଏ ସୃଷ୍ଟି ଅମୃତମୟହେ, ନବଯୁଗର ଅଭିଷେକ, ଆଶା ଭାରତଭାବନା; ଋଷିପ୍ରାଣେ ଦେବାବତରଣ, ହିମାଚଳେ ଉଦୟ ଉତ୍ସବ ଏବଂ କବିତାବଳୀ ଅନ୍ତର୍ଭୁକ୍ତ ଜୀବନଚିନ୍ତା ପ୍ରଭୃତି କବିତା କବିଙ୍କର ଦାର୍ଶନିକ ବ୍ୟକ୍ତିତ୍ୱ, ଗଭୀର ଧର୍ମଚେତନା ଓ ବିଶ୍ୱାସରେ ଉଜ୍ଜ୍ୱଳ ଏହି ଶ୍ରେଣୀର ଉଚ୍ଚାଙ୍ଗ କବିତା ।

ନୈରାଶ୍ୟପ୍ରହାରରେ ନିର୍ଜୀବ ଅବସନ୍ନ ଆଧିବ୍ୟାଧି ପୀଡ଼ିତ ଜୀବନରେ ମହାଜ୍ଞାନ-ସୂର୍ଯ୍ୟର ଉଦୟରେ ନିଜର ଧ୍ୟାନ ପୂତ ଚିତ୍ତରେ ଅନନ୍ତ ଜୀବନର ଆଧାର ସତ୍ୟଶିବ ସୁନ୍ଦରଙ୍କର ଦର୍ଶନ ପାଇ ଅନ୍ତର ତାଙ୍କର ନବବସନ୍ତରେ ଉତ୍ଫୁଲ୍ଲ ହୋଇ ଉଠିଛି । ଆକାଶସମ୍ଭବା ଭାରତୀଙ୍କର ଦିବ୍ୟ-ବାଣୀଛଳରେ ମାନବକୁ ଆଶା ଓ ଆନନ୍ଦର ବାଣୀ ଶୁଣାଇ କହିଛନ୍ତି—

ଆଶା-ପାରିଜାତ ଫୁଟିବ ହୃଦ-ନନ୍ଦନ-ବନେ
ଜ୍ଞାନ-ଭକ୍ତି-କର୍ମ-ସୌରଭ ବ୍ୟାପି ଯିବ ଜୀବନେ ।

(ଗ୍ରଂ, ପୃ. ୮୨-୮୩)

---

(୫) ତାମଭ୍ୟଗଚ୍ଛଦ୍ରୁଦିତାନୁସାରୀ କବିଃ କୁଶେଧ୍ମା ହରଣାୟ ଯାତଃ ।
ନିଷାଦ ବିଦ୍ଧାଣ୍ଡଜ ଦର୍ଶନୋଥଃ ଶ୍ଳୋକତ୍ୱମାପଦ୍ୟତ ଯସ୍ୟ ଶୋକଃ ।।

(ରଘୁବଂଶ, ୧୪।୭୦)

(୬) ଚରଣ ପଦ୍ମତଳୁଁ ଦୟାସାଗର ।
ସତେକି ଏ ଦାସୀକି କଲ ଅନ୍ତର ?

× × ×

କାହା ଶରଣ ଆଜି ହେ ରଘୁରାଜ
ଜାନକୀ ଅଭାଗିନୀ ପଶିବ ଆଜ ।

(ସୀତା ବନବାସ, (ଗ୍ରଂ., ପୃ-୪୪)

ସମଗ୍ର ବିଶ୍ୱ ପ୍ରକୃତି, ମାନବ ସମାଜ ଓ ଗୃହ ପରିବାରରେ ସେ ଶାଶ୍ୱତ, ଅନନ୍ତ ବିଭୁଙ୍କର ଅବସ୍ଥିତି ଉପଲବ୍ଧି କରି ଅନୁରୂପ ଉପଲବ୍ଧି ନିମିତ୍ତ ଆତ୍ମାକୁ ଉନ୍ମୁଖ କରିବାକୁ ବିଶ୍ୱବାସୀଙ୍କୁ କବି ଆହ୍ୱାନ କରିଛନ୍ତି ତାଙ୍କର 'ଏ ସୃଷ୍ଟି ଅମୃତମୟ' କବିତାରେ, କବିଙ୍କ ଭାଷାରେ—

ମଧୁମୟସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ ।
ଜାଗ ନରନାରୀ ଅମୃତ-ସନ୍ତତି,
ପିଅ ସେ ଅମୃତ ପୟହେ ।
(ପ୍ର°, ପୃ. ୮୩)

ଅଧ୍ୟାତ୍ମଭକ୍ତପ୍ରଧାନ ସଂସାରର ଅଳୀକତା ବ୍ୟଞ୍ଜକ କବିତା ଜୀବନଚିନ୍ତାର ସମୀକ୍ଷା କାଳରେ କେହି କେହି ଏହାକୁ ଜୀବନ ଓ ଜଗତ୍ ମୁଖୀ ଆନନ୍ଦର କବିତା ନ କହି ସଂସାର ନିସ୍ପୃହ ବୈରାଗ୍ୟର କବିତା ବୋଲି ମନ୍ତବ୍ୟ ଦେଇଛନ୍ତି ।

କିନ୍ତୁ ସଂସାରର ନଶ୍ୱରତା ସମ୍ପର୍କରେ କହିବାକୁ ଯାଇ ରୂଢ଼ବାସ୍ତବତାର ଯେଉଁ ବର୍ଣ୍ଣନା ଦେଇଛନ୍ତି; ତାହା ସତ୍ୟ; କିନ୍ତୁ ମୋହଗ୍ରସ୍ତ ମଣିଷ ସଂସାରର ନଶ୍ୱର ବସ୍ତୁ, ଚିନ୍ତା ଓ ଭବ ପ୍ରତି ଆସକ୍ତ ହୋଇ ଜୀବନର ପରମଲକ୍ଷ୍ୟ ଯେ ଆତ୍ମଦ ଉପଲବ୍ଧି, ଏଇଟା ଭୁଲିଯାଏ । ଏ ସମ୍ପର୍କରେ ତାଙ୍କ କବିତାଟି ପାଠକ ପକ୍ଷରେ ଏକ ବଳିଷ୍ଠ ଚେତାବନୀ । ସଂସାର ତ୍ୟାଗ ପାଇଁ ସେ ସନ୍ନ୍ୟାସର ଉପଦେଶ ଦେଇନାହାନ୍ତି; ଏଇ ସଂସାରର ରୂପରସ ଗନ୍ଧ ମଧ୍ୟରେ ନିର୍ଲିପ୍ତରହି ଭଗବତ୍ ସାକ୍ଷାତ୍କାର ନିମିତ୍ତ ସେ ପାଠକଙ୍କୁ ଉଦ୍‌ବୋଧନ ଦେଇଛନ୍ତି —

ତେବେ ଆରେ ଅସ୍ଥିର ହୃଦୟ
ତ୍ୟଜି କୁତ୍ସିତ ବାସନା ନିରତାଙ୍କ ଆରାଧନା
ଧର୍ମରାଜ ପ୍ରଭୁ ସେହୁ ମଙ୍ଗଳ-ଆଳୟ
ଅମୃତ ଜୀବନ ଦାତା ବ୍ରହ୍ମାଣ୍ଡ ଆଶ୍ରୟ ।

କବି ନୈରାଶ୍ୟବାଦୀ ହୋଇ ଥିଲେ 'ଧନ୍ଯ ଧୈର୍ଯ୍ୟ ଘେନରେ ସାନ୍ତ୍ୱନା,' 'ରେ ହୃଦୟ, ନହୁଅ କାତର'ର ପରି ବାଣୀ ଉଚ୍ଚାରଣ କରି ନ ଥାନ୍ତେ । ଯେ ଅମୃତ ସନ୍ଧାନୀ; ଆନନ୍ଦବାଦୀ, ଏ ସୃଷ୍ଟିକୁ ସୁଧାମୟ ମନେ କରନ୍ତି, ସେ କେବେ ନୈରାଶ୍ୟ-ବାଦୀ ହୋଇ ନ ପାରନ୍ତି ।

କବି ନିଜର ସାଧନା ଜୀବନରେ ବିରାଟ ବିଶ୍ୱ ବ୍ରହ୍ମାଣ୍ଡ ତୁଳନାରେ ନିଜର କ୍ଷୁଦ୍ରତ୍ୱ ସମ୍ପର୍କରେ ସଚେତନ ରହି ପ୍ରାଣବୀଜର ସବିତା, ଆନନ୍ଦ ସ୍ୱରୂପିଣୀ ଜଗଜ୍ଜନନୀଙ୍କର ଅନୁକମ୍ପା ପାଇଁ ତାଙ୍କ ନିକଟରେ ନିଜକୁ ସମର୍ପଣ କରି କହୁଛନ୍ତି —

ଏ ପ୍ରାଣବୀଜର ଅଟ ହେ ସବିତା,
ତୁମ୍ଭ ପ୍ରେମାଲୋକେ ସିନା,
ହେବ ଅଙ୍କୁରିତ ପୁଷ୍ପିତ ଫଳିତ
କାହିଁଗତି ତୁମ୍ଭବିନା ।

କବି ନିଜକୁ କ୍ଷୁଦ୍ର ଉର୍ମି ଓ ବିହଙ୍ଗମ ମନେ କରି ଜଗଜ୍ଜନନୀଙ୍କୁ ମହାସାଗର ଓ ଅନନ୍ତ ଆକାଶ ରୂପେ ଚିତ୍ରିତ କରିଛନ୍ତି । ସସୀମର ଅସୀମ ସହ ମିଳନ ପାଇଁ ପ୍ରାଣର ବ୍ୟାକୁଳତା ଏଥିରେ ପ୍ରକାଶିତ (୮) । ବୈଷ୍ଣବ; ସୁଫି ଓ ଭଉଲ ସାଧକଙ୍କ ସାଧନାରେ ଏଇ ଆତ୍ମସମର୍ପଣ ଉପରେ ଚୂଡ଼ାନ୍ତ ଗୁରୁତ୍ୱ ଦିଆଯାଏ ।

ତାଙ୍କର 'ଋଷିପ୍ରାଣେ ଦେବାବତରଣ' ଓ ହିମାଚଳେଉଦୟ ଉତ୍ସବ' କବିତାଦ୍ୱୟଟି ସମଗ୍ର ମଧୁ-ସୃଷ୍ଟିର ସର୍ବଶ୍ରେଷ୍ଠ ବାଙ୍ମୟ । ଋଷିଜନୋଚିତ

(୭) ମଧୁସୂଦନ ଗ୍ରନ୍ଥାବଳୀ, ପୃ-୮୩
(୮) ଅସୀମ ସେ ଚାହେ ସୀମାର ନିବିଡ ସଙ୍ଗ
ସୀମା ଚାୟ ହତେ ଅସୀମେର ମାଝେ ହାର ।
ରବୀନ୍ଦ୍ରନାଥ, ସୀମା ଓ ଅସୀମ, ଉତ୍ସର୍ଗ, ୧୭

ଭବାବେଗ, ଭବଗାମ୍ଭୀର୍ଯ୍ୟ; ଦିବ୍ୟସୌନ୍ଦର୍ଯ୍ୟ ଚେତନାର ମନୋଜ୍ଞ ପ୍ରକାଶ ଘଟିଛି ମଞ୍ଜୁଳ ଭଷା କମନୀୟ ପ୍ରକାଶଭଙ୍ଗୀରେ । କବିତା ଦୁଇଟିରେ କବିଙ୍କର ସ୍ୱକୀୟ ପ୍ରତିଭ ଓ ଜଣେ ସାର୍ଥକ ଶିଳ୍ପୀ ଆତ୍ମାର ଚମତ୍କାର ପରିପ୍ରକାଶ ପାଠକ ପ୍ରାଣରେ ଆନନ୍ଦ ସଞ୍ଚାର କରେ ।

ପୂତ ସରସ୍ୱତୀ ତୀରରେ ଭରତୀୟ ବାଙ୍ମୟ ବେଦର ଚୂଡ଼ାନ୍ତ ଆବିର୍ଭାବ ଘଟିଥିଲା, ଋଷିଙ୍କର ଦିବ୍ୟଦର୍ଶନରେ ତାର ବର୍ଣ୍ଣନା କରଯାଇଛି । 'ଋଷିପ୍ରାଣେ ଦେବାତରଣେ' କବିତାରେ । ଏଥିରେ ତମସାର ପରପାରିରେ ଆଦିତ୍ୟବର୍ଣ୍ଣ ମହାନ୍ ପୁରୁଷଙ୍କର ଉପାସନା କରଯିବା ବେଳେ 'ହିମାଚଳେ ଉଦୟ ଉତ୍ସବରେ ବାକ୍ୟମରେ ଅଗୋଚର ବିରାଟଙ୍କର କଳ୍ପନା କରଯାଇଛି । କବିତା ଦୁଇଟି ବ୍ରାହ୍ମ ମୁହୂର୍ତ୍ତ ଓ ଋଷିଙ୍କର ପବିତ୍ର ଆଶ୍ରମ ପୃଷ୍ଠଭୂମିରେ ରଚିତ । ବ୍ରାହ୍ମମୁହୂର୍ତ୍ତରେ ପ୍ରାଚୀଭଲ ପଟରେ ଦେବୀ ଉଷାର ବିଚିତ୍ର ରକ୍ତାଭ ବର୍ଣ୍ଣଛଟା ବର୍ଣ୍ଣନାରେ କବିଙ୍କର ଲେଖନୀ ମୁଖର ହୋଇ ଉଠିଛି —

ଜ୍ୟୋତିର ସିନ୍ଦୂର       ଜ୍ୟୋତିର ବଳୟ
ଜ୍ୟୋତର୍ମୟ ଅବତଂସ, ମାଳା ଜ୍ୟୋତିର୍ମୟ
ଜ୍ୟୋତିର୍ମୟ ପାରିଜାତ ଦିଗ୍‌ବଧୂ-କୁନ୍ତଳେ
ଫୁଟାଇଲେ ଜ୍ୟୋତିର୍ମୟୀ ଉଷା କୁତୂହଳେ ।
(ଋ. ଦେ., ଗ୍ରଂ. ପୃ-୯୩)

ପୂତ ବ୍ରାହ୍ମମୁହୂର୍ତ୍ତରେ ହିମ ଗୌର ପ୍ରଶସ୍ତ ଲଲାଟ ଯୁକ୍ତ ଭରତୀୟ ଋଷି ଉଷାର ବନ୍ଦନା ବିସ୍ତର କରିଛନ୍ତି । କବିଙ୍କ ଲେଖନୀରେ ସେଇ ଆର୍ଯ୍ୟ ଋଷି ମୌନ ନୁହନ୍ତି; ସେ କବି ଓ ସ୍ରଷ୍ଟା । ପ୍ରକୃତିର ଅନିର୍ବଚନୀୟ ଶୋଭରେ କବି ମୁଗ୍‌ଧ, ମହାଭବରେ ଅଭିଭୂତ; ହୃଦୟାବେଗ ଆନନ୍ଦାଶ୍ରୁରେ ବିଗଳିତ । ଗମ୍ଭୀର ଉଚ୍ଛ୍ୱାସପୂର୍ଣ୍ଣ ଋଷିଙ୍କର ହୃତୟଭେଦି ତ୍ରିଷ୍ଟୁପ୍, ଗାୟତ୍ରୀଛନ୍ଦରେ କବିଙ୍କର ଓଁକାର ଝଙ୍କାର ଖେଳି ଯାଇଛି । ସେଇ ବୈଦିକ ମନ୍ତ୍ର ଦ୍ରଷ୍ଟାଋଷି କବିଙ୍କର ସାରସ୍ୱତ ସାଧନାର ଆଦର୍ଶ ।

ବୈଦିକ ଆର୍ଯ୍ୟଋଷିଙ୍କର ହିମାଚଳରେ ପ୍ରଥମ ଜ୍ୟୋତିର୍ମୟୀ ଉଷା ଦର୍ଶନରେ ଭକ୍ତି ଓ ପ୍ରେମର ଯେଉଁ ଅନିର୍ବଚନୀୟ ଭବର ସଞ୍ଚାର ହୋଇଥିଲା, ତା'ର ଚମତ୍କାର ପ୍ରକାଶ ଘଟିଛି 'ହିମାଚଳ ଉଦୟ ଉତ୍ସବ' କବିତାରେ । ପ୍ରାଚୀଭଲପଟରେ ବାଳ ସୂର୍ଯ୍ୟଙ୍କର ଅରୁଣ ଆଭ ଅପସରି ଯାଇଛି । ଆଲୋକ ତରଙ୍ଗରେ ସମଗ୍ର ବିଶ୍ୱ ଉଦ୍‌ବେଳ । ତା'ର ମଞ୍ଜୁଳ ବର୍ଣ୍ଣନା ଦେଇ କବି ଲେଖିଛନ୍ତି—

ସୁବର୍ଣ୍ଣ ଲହରୀ ମାଡଗଲା ଗିରିକାୟେ ।
ଉଚ୍ଛ୍ୱସି ଉଠିଲା ଗିରି-ବକ୍ଷ ଆନନ୍ଦରେ;
କ୍ରମେ ଉଛୁଳିଲା ଜ୍ୟୋତି ଭୂଧରେ ଭୂଧରେ ।
ପୂରୁବେ ଦକ୍ଷିଣେ ପୁଣି ପଶ୍ଚିମେ ଉତ୍ତରେ

ଆଲୋକର ସେ ଉତ୍ସବ ଦର୍ଶନରେ କବିଙ୍କ ଅନ୍ତର ପ୍ରେମାଲୋକରେ ଉଦ୍‌ବେଳିତ, ପ୍ରକୃତି-ଶୋଭରେ କବି ତଲ୍ଲୀନ, ହୃଦୟ ତାଙ୍କର ଦିବ୍ୟରସ ପରିପୂର୍ଣ୍ଣ; ବିଶ୍ୱସୃଷ୍ଟିକୁ ଆପଣାର ମଣି ବିଶ୍ୱର ରନ୍ଧ୍ରେ ରନ୍ଧ୍ରେ, ପ୍ରତି ଅଣୁ ପରମାଣୁରେ ପରମ ସତ୍ତାଙ୍କୁ ଉପଲବ୍‌ଧି କରିଛନ୍ତି—

ଅଣୁରେ ଅଣୁରେ, ନାଥ ଏ ମହାବିଶ୍ୱର
ବାଜୁଅଛି ଅନାହତ ବୀଣା ବଂଶୀ ସ୍ୱର ।
ପ୍ରାଣେ ପ୍ରତିଧ୍ୱନି ତାର ଉଠୁଛି ସଞ୍ଚରୀ
"ମୋହରି ମୋହରି ତୁହି ମୋହରି ମୋହରି ।"

ମାନବ ଜୀବନ ଯେ ପରମ ସତ୍ତାର କଣିକା ତାହା ଯେ ଅସୀମ, କାଳାତୀତ ଏଇ ଅପାର୍ଥିବ ଅନୁଭବ, ଏଇ ବିଶ୍ୱାସ ଯେ ମନୁଷ୍ୟକୁ ମହାନ୍ କରେ, କବି ଏଇ ଅନୁଭବ ପାଠକ ଚିତ୍ତରେ ସଂକ୍ରାମିତ କରିବାର ବ୍ୟାକୁଳତା ପ୍ରକାଶ କରିଛନ୍ତି ।

ଦେଶାତ୍ମବୋଧମୂଳକ କବିତା ମଧ୍ୟରେ ଜନ୍ମଭୂମି, ଭରତ ଭବନା, ପୃଥିବୀ ପ୍ରତି, ଉତ୍କଳ-ବନ୍ଦନା ଓ ଉତ୍କଳଗାଥାର ବିଭିନ୍ନ କବିତା ଅନ୍ତର୍ଭୁକ୍ତ ।

ବିପୁଳା ପୃଥିବୀ ସଂପର୍କରେ ସାର୍ବଜନୀନ ଆଧ୍ୟାତ୍ମିକ ଚେତନା, ଏ ଦେଶର ଅତୀବ ଗୌରବ ସଂପର୍କରେ ଦେଶବାସୀଙ୍କର ଶିଥିଳ ଆତ୍ମାକୁ ଉଦ୍‌ବୁଦ୍ଧ କରିବା ପାଇଁ ବିଭିନ୍ନ କବିତାରେ ତାର ସଂକେତ ରହିଛି । ଭରତ ଭବନାରେ କବି ଋଷିକଣ୍ଠର ଓଁକାର ଧ୍ୱନିରେ ଝଂକୃତ ସରସ୍ୱତୀ ତୀର, ଅଯୋଧ୍ୟାର କୀର୍ତ୍ତି, ରମାୟଣରେ ଆଦି କବି ବାଲ୍ମୀକିଙ୍କର ପ୍ରଥମ ଶ୍ଳୋକୋଚ୍ଛ୍ୱାସ, ଇନ୍ଦ୍ରପ୍ରସ୍ଥ, ହସ୍ତିନାର ଗୌରବ ଏବଂ ଶାକ୍ୟ ସିଂହଙ୍କର ନିର୍ବାଣତତ୍ତ୍ୱ ଓ ମୈତ୍ରୀବା ସାମ୍ୟଧର୍ମର ମହତ୍ତ୍ୱ ବର୍ଣ୍ଣନା କରିଛନ୍ତି । ଶିକ୍ଷାୟତନ ଓ ଅନ୍ୟାନ୍ୟ ଜାତୀୟ ଉତ୍ସବ ମାନଙ୍କରେ ଛାତ୍ର ଛାତ୍ରୀ ଓ ସର୍ବ ସାଧାରଣଙ୍କର ପ୍ରିୟ ଦେଶାତ୍ମବୋଧ ମୂଳକ ସଙ୍ଗୀତ ହେଉଛି 'ଜନ୍ମଭୂମି ଓ 'ଉତ୍କଳ ବନ୍ଦନା' ।

ଭବଭଷା ଓ ଛନ୍ଦ ଦୃଷ୍ଟିରୁ ନୂତନତ୍ୱ ସୃଷ୍ଟିର ପ୍ରେରଣାରେ ତାଙ୍କର ଲେଖନୀରୁ ବିଭିନ୍ନ ଭବ କୈନ୍ଦ୍ରିକ ବସନ୍ତ ଗାଥାର ସନେଟ୍ (ଚତୁର୍ଦ୍ଦଶପଦୀ କବିତା) ଗୁଡ଼କର ସୃଷ୍ଟି । କବିତାଗୁଡ଼କ ମଧ୍ୟରେ ଅନେକତ୍ର ବିଷାଦଭାବ ପ୍ରକଟିତ ହୋଇଥିଲେ ମଧ୍ୟ ତା'ର ଊର୍ଦ୍ଧ୍ୱରେ କବି ଆଶା ଓ ଆନନ୍ଦ ସଞ୍ଚାରର ସଙ୍କେତ ଦେଇଛନ୍ତି । ରାଧାନଥ, ଫକୀର–ମୋହନ, ଗୌରୀଶଙ୍କର ଙ୍କର ସାଧନାର ପ୍ରଶଂସା କରିବା ସଙ୍ଗେ ସଙ୍ଗେ କେତୋଟି ଶୋକ-ଗୀତିରେ ସେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ସାର ବାସୁଦେବ ସୁଭଳଦେବ ଓ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ପ୍ରତି ନିଜର ଶ୍ରଦ୍ଧା ନିବେଦନ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଚରିତ୍ରିକ ମହତ୍ତ୍ୱ ବର୍ଣ୍ଣନା କରିଛନ୍ତି । ନବଯୁଗର ଅଭିଷେକ କବିତାରେ କବି ସମାଜର ବିଭିନ୍ନ କ୍ଷେତ୍ରରେ ସଂସ୍କାର ଆଣିଥିବା ବ୍ରାହ୍ମଧର୍ମକୁ ଲକ୍ଷ୍ୟ କରି ଧର୍ମକ୍ଷେତ୍ରରେ ନିଜର ଉଦାର ଦୃଷ୍ଟିଭଙ୍ଗୀର ପରିଚୟ ଦେଉଛନ୍ତି । ମନୁଷ୍ୟ ଯେ ବ୍ରହ୍ମସନ୍ତାନ, ଅମୃତର ସନ୍ତାନ, ଏଇ ଚେତନାର ଉଦ୍‌ବୋଧନ ଦେଇଛନ୍ତି କବିତାଟିରେ ।

ବ୍ରାହ୍ମ ଉପାସନା ମନ୍ଦିରରେ ଗୀତ ହେବା ଉଦ୍ଦେଶ୍ୟରେ କବି ବହୁ ବ୍ରାହ୍ମସଙ୍ଗୀତ ରଚନା କରିଛନ୍ତି ଏବଂ ଛାତ୍ର ମାନଙ୍କର କଲ୍ୟାଣ ପାଇଁ ବହୁ ନୀତି ଉପଦେଶ ଗର୍ଭକ ପଦ୍ୟ ରଚନା କରିଛନ୍ତି । ଦେଶର ଭବୀଦାମ୍ଭାଦ ମାନଙ୍କୁ ଗଢ଼ିବା ଦିଗରେ ନୀତି କବିତାଗୁଡ଼କର ଯଥାର୍ଥତା ଥିଲେ ମଧ୍ୟ ସେ ଗୁଡ଼କୁ ଉଚ୍ଚାଙ୍ଗ ସାହିତ୍ୟ କହିହେବ ନାହିଁ । ସମୀକ୍ଷକ ମାନେ ରାଧାନାଥଙ୍କୁ ଇଂରାଜିକବି ଶେଲି (Shelley) ଙ୍କ ସହ ତୁଳନା କରି ମଧୁ–ସୂଦନଙ୍କୁ ଓ୍ୱାର୍ଡସ୍ ଓ୍ୱାର୍ଥଙ୍କ (Words worth) ସହ ତୁଳନା କରିଛନ୍ତି । ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କ ଭାଷାରେ–ରାଧାନାଥ ରସଜ୍ଞ କବି, ସେ ରସୋତ୍ତୀର୍ଣ୍ଣ ନୀତିର ନିକ୍ତି ଧରି ଚାଲିଅଛନ୍ତି ।

ଉପନିଷଦ୍‌ର ସାର୍ବଜନୀନ ବ୍ରହ୍ମତତ୍ତ୍ୱରେ ବିଶ୍ୱାସୀ ମଧୁସୂଦନ ନିର୍ଗୁଣ, ନିରାକାର ନିରଞ୍ଜନ ପରମସତ୍ତାଙ୍କ ଉଦ୍ଦେଶ୍ୟରେ ନିଜର ହୃଦୟର ବ୍ୟାକୁଳତା ଓ ଭକ୍ତି ନିବେଦନ କରି ଆନନ୍ଦ-ରସରେ ନିମଜ୍ଜିତ ହେବା ସଙ୍ଗେ ସଙ୍ଗେ ବିଶ୍ୱମାନବର କଲ୍ୟାଣ ପାଇଁ ନିଜ ଅନ୍ତରର ଅହୈତୁକୀ ବ୍ୟାକୁଳତା ପ୍ରକାଶ କରିଛନ୍ତି । ବିଶ୍ୱର ଅଣୁପରମାଣୁରେ ବ୍ରହ୍ମଙ୍କର ସତ୍ତା ଅନୁଭବ କରିବା ପାଇଁ ଏବଂ ମାନବ ସମାଜକୁ ସେ ଅନୁଭବର ଭାଗୀ ହେବା ପାଇଁ ଅନ୍ତରରେ ତାଙ୍କର କି ଅଧୀର ଆବେଗ ! ଆଜିର ଶୋକତାପଦଗ୍ଧ ବିକ୍ଷୁବ୍ଧ, ସଂକୁଚିତ ମାନବାତ୍ମା ପାଇଁ ତାଙ୍କର ସାରସ୍ୱତ ସାଧନାଯେ ସୁରଭିତ ଚନ୍ଦନ, ଏଥିରେ ସନ୍ଦେହ ନାହିଁ ।

ଅବସରପ୍ରାପ୍ତ ପ୍ରଫେସର
ଜେ/ଅ. ପ୍ରଭତ କୁମାର ମହାପାତ୍ର
ସାଆନ୍ତ ସାଇ, କଟକ - ୧

# ଆଧୁନିକ ଉପନ୍ୟାସର ବର୍ଣ୍ଣନାତ୍ମକ କାହାଣୀ ବିନ୍ୟାସ ଶୈଳୀ

ଡକ୍ଟର ବିଭୂତି ପଟ୍ଟନାୟକ

ଉପନ୍ୟାସରେ ନାରେଟିଭ ଟେକ୍‌ନିକ୍ ବା ବର୍ଣ୍ଣନାତ୍ମକ କାହାଣୀ ବିନ୍ୟାସ ଶୈଳୀ କଣ ? Narrative is the presentation in a novel of the events that happen in the story. ଅକ୍‌ସଫୋର୍ଡ ଅଭିଧାନରେ ଏହାକୁ ଆଉ ଠିକ୍ ବୁଝାଇ କୁହାଯାଇଛି "Fictitions prose narrative of sufficient length to fill one or more volumes, protraying characters and actions, representative of real life in continuous plot.' ଅର୍ଥାତ ଉପନ୍ୟାସ ହେଉଛି ମୋଟାମୋଟି ଏକ ବା ଏକାଧିକ ଖଣ୍ଡର କଳ୍ପନା ମୂଳକ ଗଦ୍ୟ କାହାଣୀ— ଯେଉଁଥିରେ ଧାରବାହିକ ଆଖ୍ୟାନବିନ୍ୟାସ (plot), ବାସ୍ତବ ଜୀବନର ପ୍ରତିନିଧିସ୍ଥାନୀୟ ଚରିତ୍ର ଏବଂ ଘଟଣାର ଚିତ୍ର ଅଙ୍କିତ ହୁଏ । ତେଣୁ ବର୍ଣ୍ଣନାତ୍ମକ କାହାଣୀବିନ୍ୟାସ ହେଉଛି ଏକ ପ୍ରକାର ଶୈଳୀ ଯାହା ପ୍ରୟୋଗ କରି ଔପନ୍ୟାସିକ ସମାଜ ଓ ବ୍ୟକ୍ତି ଜୀବନର ପରିପୂର୍ଣ୍ଣ ଚିତ୍ର କାହାଣୀ ମାଧ୍ୟମରେ ପାଠକ ସମ୍ମୁଖରେ ଉପସ୍ଥାପିତ କରେ ।

Percy Lubbock ତାଙ୍କ 'The Craft Fiction' ଗ୍ରନ୍ଥରେ ଉପନ୍ୟାସ ଉପସ୍ଥାପନର ଦୁଇ ପ୍ରକାର ଉପାୟ କଥା ଉଲ୍ଲେଖ କରିଛନ୍ତି । ପ୍ରଥମଟି ହେଲା Scenic or dramatic ଦୃଶ୍ୟମୟ ଅଥବା ନାଟକୀୟ ଉପାୟରେ ବିଷୟବସ୍ତୁର ଉପସ୍ଥାପନା ଏବଂ ଦ୍ୱିତୀୟଟି ହେଲା Panoramic ବା ଚଳମାନ ଦୃଶ୍ୟାବଳୀ ସମ୍ମତ କୌଶଳ ଅବଲମ୍ବନ କରି ଧୀରେ ଧୀରେ ଘଟଣାବଳୀ ପାଠକ ସମ୍ମୁଖରେ ଉନ୍ମୋଚନ କରିବା ରୀତି ।

ଉପନ୍ୟାସର ଦୃଶ୍ୟମୟ ନାଟକୀୟ ଉପସ୍ଥାପନା ଶୈଳୀରେ ଗୋଟିଏ ପରେ ଗୋଟିଏ ଦୃଶ୍ୟ ପର୍ଯ୍ୟାୟକ୍ରମେ ଉପସ୍ଥାପିତ କରି କାହାଣୀକୁ ଏକ ଅର୍ଥପୂର୍ଣ୍ଣ ପରିସମାପ୍ତିରେ ପହଞ୍ଚାଇ ଦିଆଯାଏ । ଏଠାରେ ଔପନ୍ୟାସିକ ଚରିତ୍ର ଘଟଣା ଓ ସଂଳାପକୁ ଏପରି ଭାବରେ ସଜାଇ ଦେଇଥାଆନ୍ତି ଯେ କାହାଣୀ (Plot) ମାଧ୍ୟମରେ ସହଜରେ ଉପନ୍ୟାସର ଭାବବସ୍ତୁ (Theme) ପାଠକର ମର୍ମଭେଦ କରିଯାଏ । ଏହାକୁ କୁହାଯାଏ ଉପନ୍ୟାସର ସରଳ ବର୍ଣ୍ଣନାତ୍ମକ ଶୈଳୀ ।

କିନ୍ତୁ Panoramic ବା ଦୃଶ୍ୟାବଳୀ ସମ୍ମତ ଉପସ୍ଥାପନାରେ ଔପନ୍ୟାସିକ ସମାଜ ଓ ବ୍ୟକ୍ତି ଜୀବନର ବୃହତ୍ତର ପୃଷ୍ଠଭୂମିରେ ଚରିତ୍ରମାନଙ୍କର ଭାବ ଜଗତରେ ସୃଷ୍ଟି ହେଉଥିବା କ୍ରିୟା ପ୍ରତିକ୍ରିୟାକୁ ଉପନ୍ୟାସରେ ଚିତ୍ରାୟିତ କରନ୍ତି । ସରଳ ବର୍ଣ୍ଣନାତ୍ମକ ଶୈଳିରେ ବାହ୍ୟ ଘଟଣାର ଦୃଶ୍ୟସଜ୍ଜା ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିବା ବେଳେ ଦୃଶ୍ୟାବଳୀ ସମ୍ମତ ବର୍ଣ୍ଣନା ଶୈଳୀରେ ଚରିତ୍ରମାନଙ୍କ ମନୋଜଗତର ଛବି ଅଧିକ ଗାଢ଼ ରଙ୍ଗରେ ଉପନ୍ୟାସରେ ଚିତ୍ରିତ ହୁଏ । ଅତୀତ, ବର୍ତ୍ତମାନ ଭବିଷ୍ୟତର କାଳାନୁକ୍ରମିକ ଧାରବାହିକତାର ନିୟମ ଲଂଘନ

କରି ଔପନ୍ୟାସିକ ଏଠାରେ ଚରିତ୍ର ଘଟଣା ଓ ପରିବେଶକୁ ନିଜ ଇଚ୍ଛା ଅନୁସାରେ ସଜାଇଦେଇ ପାରନ୍ତି । କାରଣ ସରଳ ବର୍ଣ୍ଣନାତ୍ମକ ଶୈଳୀରେ ରଚିତ ଉପନ୍ୟାସରେ ଘଟଣା ଉପରେ ଅଧିକ ଗୁରୁତ୍ୱ ଆରୋପ କରଯାଇଥିବା ବେଳେ Panoramic ବା ଦୃଶ୍ୟାବଳୀ ସମ୍ମତ ଶୈଳୀରେ ଲିଖିତ ଉପନ୍ୟାସରେ ଘଟଣାର ଅଭିମୁଖ୍ୟ ବା motive ଉପରେ ବେଶୀ ଜୋର୍ ଦେଇଥାଆନ୍ତି ।

ଉପନ୍ୟାସ ଏକ ଜଟିଳ କଳାରୂପ (Artform) । ପରିବର୍ତ୍ତିତ ସମାଜ ଓ ସମସ୍ୟା କଣ୍ଟକିତ ବ୍ୟକ୍ତି ଜୀବନର ରୂପ ଓ ରହସ୍ୟକୁ କାବ୍ୟ କବିତା, ନାଟକ ଓ କ୍ଷୁଦ୍ରଗଳ୍ପରେ ପ୍ରକାଶ କରିବା ଯେତେବେଳେ ସହଜ ହେଲା ନାହିଁ ଏକ ବିକଳ୍ପ ଶକ୍ତିଶାଳୀ ଅଭିବ୍ୟକ୍ତିମୟ ମାଧ୍ୟମ ଭାବରେ ଉପନ୍ୟାସର ଜନ୍ମ । ତେଣୁ ତାର ଗଠନ କଳା, ବାଣୀଭଙ୍ଗୀ, ଲକ୍ଷ୍ୟ, ଅଭିମୁଖ୍ୟ ଦ୍ରୁତ ବେଗରେ ପରିବର୍ତ୍ତିତ ହେବାରେଲାଗିଛି । ଜୀବନର ଜଟିଳତା ବଢିବା ସଙ୍ଗେ ସଙ୍ଗେ ଉପନ୍ୟାସର ବର୍ଣ୍ଣନାଶୈଳୀ ମଧ୍ୟ ସେହିପରି ବଦଳି ଯାଉଛି । ଏକଦା କାହାଣୀ ଥିଲା ଉପନ୍ୟାସର ପ୍ରାଣ; ଆଜି କାହାଣୀ ଏକ ଉପଲକ୍ଷ୍ୟରେ ପରିଣତ, ଲକ୍ଷ୍ୟ ଜୀବନର ଉପଲବ୍‌ଧିକୁ ପ୍ରତୀକାତ୍ମକ ଭାବରେ ପ୍ରକାଶ କରିବା । ମଧ୍ୟଯୁଗୀୟ ବୀରପୁରୁଷମାନଙ୍କ ଭଳି ଏକଦା ଆଦର୍ଶବାଦୀ, ମହତ୍ତ୍ୱପୂର୍ଣ୍ଣ ଚରିତ୍ର ସୃଷ୍ଟିକରିବା ଥିଲା ଉପନ୍ୟାସର ଲକ୍ଷ୍ୟ, ଆଜି ଚରିତ୍ରମାନେ ଗୌଣ, ଏପରିକି ସେମାନେ ନିଜର ପିତୃଦତ୍ତ ନାମ ହରାଇ କାଫ୍‌କାଙ୍କ ଉପନ୍ୟାସରେ 'K' ଭଳି ଗୋଟିଏ ଅକ୍ଷର ଭାବରେ ଚିହ୍ନିତ । ୟୁରୋପରେ ଅଷ୍ଟାଦଶ,ଊନବିଂଶ ଶତାବ୍ଦୀରେ ଏବଂ ଆମ ଦେଶରେ ଏ ଶତାବ୍ଦୀର ପଞ୍ଚମ ଦଶକ ପର୍ଯ୍ୟନ୍ତ ଅନ୍ତତଃ ସମାଜ ସଂସ୍କାର ଅଥବା ସମାଜ ସଚେତନତା ହେଲା ଉପନ୍ୟାସର ଧର୍ମ । କିନ୍ତୁ ସାମାଜିକ ଉପନ୍ୟାସ ଅପେକ୍ଷା Franz Kafka, Strindberg, Samuel Beckett, Jack Xerouor ଙ୍କ ଭଳି ଲେଖକ ମାନଙ୍କ ଶୈଳୀ ଅନୁସରଣରେ ଆମ ଦେଶରେ ମଧ୍ୟ Asocial ବା ସମାଜ-ନିରପେକ୍ଷ ଉପନ୍ୟାସ ରଚିତ ହେଉଛି । ଗୋପୀନାଥ ମହାନ୍ତିଙ୍କ 'ଆକାଶ ସୁନ୍ଦରୀ' ଅଥବା ବଙ୍ଗଳାର କମଳ କୁମାର ମଜୁମଦାରଙ୍କ ରଚିତ 'ପିଞ୍ଜରେ ବସିୟା ସୁଚୁ' ଏହାର ଆଦର୍ଶ ଉଦାହରଣ । ବେକେଟୀୟ ଶୈଳୀ ଅନୁସରଣରେ ବ୍ୟାକରଣର ନୀତି ନିୟମ ଭଙ୍ଗି ଦିର୍ଘ ଦୁଇଶହ ପୃଷ୍ଠାର ଉପନ୍ୟାସ ଗୋଟିଏ ବାକ୍ୟରେ ରଚନା କରିଛନ୍ତି କମଳକୁମାର ମଜୁମଦାର । ତାଙ୍କର ବାକ୍ୟଗଠନ ରୀତି ଅବ୍ୟୟ ବ୍ୟବହାର, କାରକ ବିଭକ୍ତି ପ୍ରୟୋଗ— ଏସବୁ ବଙ୍ଗଳା ବ୍ୟାକରଣ ବହିର୍ଭୂତ । ବ୍ୟାକରଣର ମେରୁଦଣ୍ଡ ଭାଙ୍ଗି ପୂର୍ଣ୍ଣଚ୍ଛେଦ, ପରିଚ୍ଛେଦହୀନ ଅବାଧ ଭାବାବେଗକୁ ଉପନ୍ୟାସରେ ଚିତ୍ରାୟିତ କରିବା ପାଇଁ କମଳ କୁମାର ମଜୁମଦାର ଥିଲେ ବଦ୍ଧ ପରିକର । କବିତାରେ ଯାନ୍ତିକତା, ଛନ୍ଦ ଓ ଯତିପାତର ବନ୍ଧନ ଯେପରି କବିର ଭାବପ୍ରକାଶର ପଥରୋଧ କରେ ବୋଲି ଆଧୁନିକ ଗଦ୍ୟ କବିତାରେ ଛନ୍ଦହୀନତାର ଜୟଜୟକାର; ବ୍ୟାକରଣର ବିଧି ନିଷେଧ ବର୍ଣ୍ଣନାତ୍ମକ ଗଦ୍ୟରେ ଉପନ୍ୟାସର ସ୍ୱଚ୍ଛନ୍ଦ ପ୍ରବାହକୁ ପ୍ରତିହତ କରେ ବୋଲି କମଳ କୁମାରଙ୍କ 'ପିଞ୍ଜରେ ବସିୟା ସୁଚୁ' ଭଳି ଆକାରରେ ବଡ ନ ହେଲେ ମଧ୍ୟ ଗୋପୀ ବାବୁଙ୍କ 'ଆକାଶ ସୁନ୍ଦରୀ' ଉପନ୍ୟାସିକାରେ ସେହି ପ୍ରକାରର ଅଭିବ୍ୟକ୍ତି ସ୍ପଷ୍ଟ ଓ ପ୍ରାଞ୍ଜଳ । ତାନ୍ତ୍ରିକର ମନ୍ତ୍ର-ସାଧନା ଭଳି ଉପନ୍ୟାସରେ ସିଦ୍ଧ ସାଧକର ଶବ୍ଦ ସାଧନା ପାଠକକୁ ମନ୍ତ୍ରମୁଗ୍ଧ କରି ରଖିବା ପାଇଁ ଅଭିପ୍ରେତ ନୁହେଁ; ଏହାର ଏକମାତ୍ର ଲକ୍ଷ୍ୟ ଉପନ୍ୟାସର ପ୍ରକରଣରେ ନୂତନତ୍ୱ ଆଣି ପାଠକର ବୋଧଶକ୍ତିକୁ ଆଲୋଡ଼ିତ କରିବା । ସମ୍ଭବ ହେଲେ ତାର ସ୍ଥୂଳ ରସ-ପିପାସାକୁ

କୁତୁକୁତୁ କରି ତାକୁ ଅନ୍ୟ ଏକ ଉତ୍ତେଜଗତରେ ପହଞ୍ଚାଇ ଦେବା ।

କିନ୍ତୁ ଏଭଳି ପରୀକ୍ଷା-ନିରୀକ୍ଷା ଉପନ୍ୟାସ ରଚନା କ୍ଷେତ୍ରରେ ଖୁବ୍ ଲୋକପ୍ରିୟ ବୋଲି କୁହା-ଯାଇ ପାରିବ ନାହିଁ । ଆଜି ସୁଦ୍ଧା ସେହି ପ୍ରଥା-ସିଦ୍ଧ ବର୍ଣ୍ଣନାତ୍ମକ କାହାଣୀ ବିନ୍ୟାସ ଶୈଳୀ ଅନୁସରଣ କରି ପୃଥିବୀର ବିଭିନ୍ନ ଭାଷାରେ ଉପନ୍ୟାସ ଲେଖା ହୋଇଛି । ଆମ ଭାଷାର ଉପନ୍ୟାସ ମଧ୍ୟ ତାଠାରୁ ବ୍ୟତିକ୍ରମ ନୁହେଁ । ଓଡ଼ିଆ ଉପନ୍ୟାସର ଜନକ ଫକୀରମୋହନ ଅନ୍ୟ ବହୁ ଆଦି-ଔପନ୍ୟାସିକ ମାନଙ୍କ ଭଳି ସରଳ କାହାଣୀ ବିନ୍ୟାସ ଶୈଳୀ ଅବଲମ୍ବନ କରି ଉପନ୍ୟାସ ଲେଖାରେ ହାତ ଦେଇଥିଲେ । ଉପନ୍ୟାସ ସୃଷ୍ଟି ହେବା ପୂର୍ବରୁ କାହାଣୀ କହିବା ଶୁଣିବା ଥିଲା କାମ । କଥା ସାହିତ୍ୟର ପରମ୍ପରା ତେଣୁ ଶ୍ରୋତା ଯେପରି ବର୍ଣ୍ଣିତ କାହାଣୀ ପ୍ରତି ତାର ଆଗ୍ରହ ହରାଇ ନ ବସେ; ସେଥିପ୍ରତି କଥକର ଦୃଷ୍ଟି ଥିଲା ତୀକ୍ଷ୍ଣ । ସେହି ପରଂପରାର ଦାୟାଦ ଆମର ଆଦି-ଔପନ୍ୟାସିକ ମାନେ ପାଠକର ଆଗ୍ରହ ଓ ଉତ୍କଣ୍ଠାକୁ ଲକ୍ଷ୍ୟରଖି ନିଜର କାହାଣୀ ବିନ୍ୟାସ କରିଥିଲେ । ଉପନ୍ୟାସର ଲେଖକ ଥିଲା କାହାଣୀର କଥକ । ପାଠକର ମନୋରଞ୍ଜନ କରିବା ଥିଲା ଔପନ୍ୟାସିକର ମୂଳ ଲକ୍ଷ୍ୟ । ଉପନ୍ୟାସର ବର୍ଣ୍ଣନା ପାଠକର ଧୈର୍ଯ୍ୟଚ୍ୟୁତ ଯେପରି ନ ଘଟାଇବ ସେଥିପ୍ରତି ଲେଖକ ଥିଲା ସଚେତନ । ସେଥିପାଇଁ 'ମାମୁଁ' ଉପନ୍ୟାସ ଦ୍ୱିତୀୟ ପରିଚ୍ଛେଦରେ ଉତ୍ତରୀୟ ବଂଶର ପରିଚୟ ଦେବାକୁ ଗଲାବେଳେ ଗୋଟିଏ ଯାଗାରେ ଫକୀର-ମୋହନ ଉଲ୍ଲେଖ କରିଛନ୍ତି 'କଥା ଗୁଡାକ ପାଠକ ମହାଶୟଙ୍କ ମନକୁ ନ ରୁଚିପାରେ । ଇଚ୍ଛାକଲେ ଦୁଇଚାରି ପୃଷ୍ଠା ଓଲଟାଇ ଦେଇ ଯାଇ ପାରନ୍ତି । ସତେ ଯେପରି ଲେଖକ ଆତ୍ମମଗ୍ନ ଭାବରେ ଉପନ୍ୟାସ ଲେଖୁନାହାନ୍ତି; ତାଙ୍କ ସାମ୍ନାରେ ପାଠକ ମାନେ ଶ୍ରୋତା ଭାବରେ ବସିଛନ୍ତି ଏବଂ ଲେଖକ ସେମାନଙ୍କୁ ନିଜ ଉପନ୍ୟାସର କାହାଣୀ କହି ଯାଉ-ଛନ୍ତି ! ତେଣୁ କାଳେ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ପାଠକ-ଶ୍ରୋତା ମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟାଇବ; ସେଥିପାଇଁ ଦୁଇ ତିନି ପୃଷ୍ଠା ଓଲଟାଇ ଗଲେ କାହାଣୀର ରସ ଗ୍ରହଣରେ କୌଣସି ବ୍ୟାଘାତ ଘଟିବ ନାହିଁ ବୋଲି ସେ ପାଠକମାନଙ୍କୁ ମନେ-ପକାଇ ଦେଇଛନ୍ତି ।

କେବଳ ଫକୀରମୋହନ ନୁହନ୍ତି; ପୃଥିବୀର ଅନ୍ୟ ବହୁ ବିଶିଷ୍ଟ ଔପନ୍ୟାସିକଗଣ ମଧ୍ୟ ଖୁବ୍ ପାଠକ-ମାନଙ୍କ ମନୋରଂଜନ ପାଇଁ ବ୍ୟଗ୍ର । ଫରାସୀ ସାହିତ୍ୟରେ ବାସ୍ତବବାଦୀ ଉପନ୍ୟାସର ଜନକ ବାଲ୍‌ଜାକ୍ ତାଙ୍କ 'ଓଲ୍ଡ୍ ଗରିଅ' ଉପନ୍ୟାସର ଆରମ୍ଭରେ ଠିକ୍ ସେହି କାରଣରୁ ପାଠକମାନଙ୍କୁ ଲକ୍ଷ୍ୟକରି କହିଛନ୍ତି—"ଏ ବହି ପଢୁ ପଢୁ ଯେତେ-ବେଳେ ଆପଣମାନେ ବୃଦ୍ଧ ଗରିଅର ଗୋପନ କଥା ଜାଣିପିବେ, ସେତେବେଳେ ଆପଣଙ୍କ ଭୋଜନରେ କୌଣସି ପ୍ରକାର୍ ବାଧା ଉପୁଜିବ ନାହିଁ, ବରଂ ଲେଖକକୁ ଆପଣ ଦୋଷ ଦେବେ । କାରଣ ସେ ତାର କଳ୍ପନାର ବିହଙ୍ଗମକୁ ସୁଦୂର ଆକାଶରେ ଡେଣା ମେଲାଇବାକୁ ଛାଡଦେଇଛି । କିନ୍ତୁ ମୁଁ ଦୃଢତାର ସହିତ କହୁଛି, ଯେଉଁ ଜୀବନ-ନାଟ୍ୟ ମୁଁ ଆପଣଙ୍କ ସମ୍ମୁଖରେ ଉପସ୍ଥାପିତ କରୁଛି, ସେଥିରୁ କୌଣସିଟି ମିଥ୍ୟା କଳ୍ପନା ନୁହେଁ; ସବୁ ସତ୍ୟ, 'All is true'."

ଠିକ୍ ସେହିଭଳି ପ୍ରଖ୍ୟାତ ଇଂରେଜୀ ଔପନ୍ୟାସିକ ଫିଲ୍ଡିଂ ତାଙ୍କ 'ଟମ୍ ଜୋନ୍ସ' ଉପନ୍ୟାସର ଚତୁର୍ଥ ଖଣ୍ଡର ଆରମ୍ଭରେ ଉଲ୍ଲେଖ କରିଛନ୍ତି, ଉପନ୍ୟାସ ପଢୁ ପଢୁ ପାଠକକୁ ଯେପରି ନିଦ ଆସି ନଯାଏ ସେଥିପାଇଁ ସେ ଉପନ୍ୟାସରେ ଜାଣିଶୁଣି Sundry smiles, descriptions

and other types of Poetic embellishments' ର ପ୍ରୟୋଗ କରିଛନ୍ତି ।

ଉପନ୍ୟାସର ଏଭଳି କାହାଣୀ ବିନ୍ୟାସରେ ଔପନ୍ୟାସିକ କେବଳ ଲେଖକ ନୁହେଁ; ସେ ମଧ୍ୟ ଟୀକାକାର ଭୂମିକା ପାଳନ କରେ । କାହାଣୀ ପ୍ରତି ପାଠକର ମନଯୋଗ ଆକର୍ଷଣ କରିବା ପାଇଁ ଘଟଣା ଓ ଚରିତ୍ର ସଂପର୍କରେ ତାକୁ ମଝିରେ ମଝିରେ ବ୍ୟାଖ୍ୟାନ ପ୍ରଦାନ କରିବାକୁ ପଡେ । ସରଳ ବର୍ଣ୍ଣନାତ୍ମକ କାହାଣୀ ବିନ୍ୟାସ ଶୈଳୀର ଏହା ଏକ ଲକ୍ଷଣୀୟ ବୈଶିଷ୍ଟ୍ୟ ।

ଉପନ୍ୟାସର ଏହି କାହାଣୀ ବିନ୍ୟାସ କେବଳ ନାଟକୀୟ ଘଟଣା ସଜ୍ଜିକରଣ ପଥରେ ରଚିତ ହୋଇ ନଥାଏ; କିମ୍ବା ଔପନ୍ୟାସିକ ନିଜ ଭଷାରେ ପାଠକକୁ କାହାଣୀ କହି ସନ୍ତୁଷ୍ଟ ହୁଏ ନାହିଁ । ଘଟଣା ଓ ଚରିତ୍ରର ବାସ୍ତବତା ସଂପର୍କରେ ପାଠକ ମନରେ ପ୍ରତ୍ୟୟ ସୃଷ୍ଟି କରିବା ପାଇଁ ତାକୁ ଚିଠିପତ୍ର, ଡାଏରୀ, ଆତ୍ମକଥନ ଶୈଳୀକୁ ମଧ୍ୟ ବ୍ୟବହାର କରିବାକୁ ପଡେ ।

ଇଂରେଜୀ ସାହିତ୍ୟର ପ୍ରଥମ ଔପନାସିକ ରିଚ୍ଚର୍ଡସନ୍ ତାଙ୍କ 'ପାମେଲ' ଉପନ୍ୟାସକୁ ନାୟିକାର ପତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି । ଏହା ଗତ୍ରୋପନ୍ୟାସ (Epsitolary) ଶୈଳୀ ଭବରେ ପରିଚିତ । ମୋର 'ଦିନ ଯାଏ ଚିହ୍ନ ରହେ' ଏବଂ ବସନ୍ତ କୁମାରୀ ପଟ୍ଟନାୟକଙ୍କ 'ଅଲିଭ ଚିତା' ଏହିଭଳି ଦୁଇଟି ଲୋକପ୍ରିୟ ପତ୍ରୋପନ୍ୟାସ ।

କେବଳ ପତ୍ର-ଆକାରରେ ନୁହେଁ; ଡାଏରୀ ଆକାରରେ ରଚିତ ଉପନ୍ୟାସ ମଧ୍ୟ ବେଶ୍ ଲୋକ-ପ୍ରିୟ ଶୈଳୀ ଭବରେ ଉପନ୍ୟାସରେ ବ୍ୟବହୃତ । ମନସ୍ତାତ୍ତ୍ୱିକ ଉପନ୍ୟାସ ପାଇଁ ଏଭଳି ଶୈଳୀ ଅଧିକ ପ୍ରଭବଶାଳୀ ମନେହୁଏ । ମୋର 'କେଶବତୀ-କନ୍ୟା' ଉପନ୍ୟାସରେ ପ୍ରଥମ ଅଂଶ ନାୟକର ଆତ୍ମ କଥନ, ଦ୍ୱିତୀୟ ଅଂଶ ନାୟିକାର ପତ୍ରଲିପି ଏବଂ ଶେଷ ଅଂଶ ପ୍ରତିନାୟକର ଡାଏରୀ ଶୈଳିରେ ରଚିତ ।

ଉପନ୍ୟାସରେ ଆତ୍ମକଥନ ବାଣୀଭଙ୍ଗୀ ବା ପ୍ରଥମ ପୁରୁଷରେ ଉପନ୍ୟାସର କଥାବସ୍ତୁ ଉପସ୍ଥାପିତ କରିବା ଶୈଳୀ ପୃଥିବୀର ପ୍ରାୟ ସବୁ ଭଷାର ଉପନ୍ୟାସରେ ଲୋକପ୍ରିୟ ବର୍ଣ୍ଣନାଶୈଳୀ ଭବରେ ସୁପରିଚିତ । ଓଡ଼ିଆ ଭଷାରେ ୧୯୨୪ ମସିହାରେ ପ୍ରକାଶିତ ଉପେନ୍ଦ୍ର କିଶୋର ଦାସଙ୍କ 'ମଲାଜହ୍ନ' ଉପନ୍ୟାସ ଏହି ଭଳି ଶୈଳୀରେ ରଚିତ । ମୋ 'ସତୀ-ଅସତୀ' ଉପନ୍ୟାସରେ ଗୋଟିଏ ପରି-ଚ୍ଛେଦରେ ନାୟିକା, ପରବର୍ତ୍ତୀ ପରିଚ୍ଛେଦରେ ନାୟକ ପର୍ଯ୍ୟାୟ କ୍ରମେ ନିଜ ନିଜ କାହାଣୀ ବର୍ଣ୍ଣନା କରିବା ମଧ୍ୟରେ ଉପନ୍ୟାସ ପରିସମାପ୍ତି ବା ଶୀର୍ଷବିନ୍ଦୁରେ ଉପନୀତ ହୋଇଛି ।

କିନ୍ତୁ ଉପନ୍ୟାସର ବ୍ୟାକରଣଗତ ଆଂଗିକ ଦୃଷ୍ଟିରୁ ଆତ୍ମକଥନମୂଳକ ଶୈଳୀ ଏବଂ ପ୍ରଥମ ପୁରୁଷରେ ବକ୍ତବ୍ୟ ବ୍ୟକ୍ତ କରିବା ଶୈଳୀ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ରହିଛି । ପ୍ରଥମ ପୁରୁଷ ବର୍ଣ୍ଣନା ଯାହାର ଚୌହଦୀ ମଧ୍ୟରେ ବିସ୍ତାର ଲାଭ କରେ ତାର ସଂଜ୍ଞା ଦିଆଯାଇଛି ଅପାତ-ବସ୍ତୁ- ନିଷ୍ଠା ଭଷା (Quasi - objective Language) ; 'ଅପାତ-ବସ୍ତୁନିଷ୍ଠ ଭଷା' କହିଲେ ଆମେ ସେହି ଭଷାକୁ ବୁଝୁ ଯାହା 'ବସ୍ତୁନିଷ୍ଠ ଭଙ୍ଗୀ'ରେ ସେହି ସବୁ କଳ୍ପିତ ତଥ୍ୟ, ଘଟଣା ବା ବସ୍ତୁ ସଂପର୍କରେ ଆମକୁ ଅବହିତ କରେ । ଭଷା ଏଠାରେ କଥନ ନାମକ ପ୍ରଶନ୍ନ ବ୍ୟକ୍ତିର ଭଷା ନୁହେଁ, ବସ୍ତୁର ଭଷା । ଏହି ଅପାତ-ବସ୍ତୁ-ନିଷ୍ଠ ଭଷା ନାଟକୀୟ ପଦ୍ଧତିରେ ସଜ୍ଜିତ ଶୈଳୀର ଭଷା ଅପେକ୍ଷା ଅଧିକ ପ୍ରଭବଶାଳୀ ଏବଂ ସେଥିପାଇଁ ଏହି ଶୈଳୀରେ ରଚିତ ଉପନ୍ୟାସ ବିଷୟବସ୍ତୁର ବାସ୍ତବତା ସଂପର୍କରେ ପାଠକ ମନରେ ପ୍ରତ୍ୟୟ ସୃଷ୍ଟି କରିବାରେ ଅଧିକ ସମର୍ଥ ।

କାହାଣୀ ବିନ୍ୟାସ ଶୈଳୀର ଏହି କେତୋଟି ଶିଳ୍ପରୂପକୁ ଅବଲମ୍ବନ କରି ରଚିତ ଉପନ୍ୟାସ ଦୀର୍ଘ ଦିନ କଥା ସାହିତ୍ୟକୁ ଆଚ୍ଛନ୍ନ ଏବଂ ସମୃଦ୍ଧ କରି ଆସିଥିଲେ ମଧ୍ୟ ୟୁଲିସିସ୍-ପରବର୍ତ୍ତୀ କାଳରେ (Post-Ullysiss Period) ଉପନ୍ୟାସର ସ୍ୱରୂପ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏ ଶୈଳୀର ସଂକଟ ମଧ୍ୟ ସୃଷ୍ଟି ହୋଇଛି । କାରଣ ଉପନ୍ୟାସର କାହାଣୀ କ୍ରମଶଃ ଗୌଣ ହୋଇଯାଇଛି । ତେଣୁ ଏହି ଶୈଳୀ-ସଂକଟକୁ କେହି କେହି ଉପନ୍ୟାସର ସଂକଟ ବୋଲି ମଧ୍ୟ ଆଖ୍ୟାୟିତ କରିଛନ୍ତି । ଉପନ୍ୟାସର ସହଜ ବୋଧ୍ୟତା, ସମାଜ କୈନ୍ଦ୍ରୀକତା ବଦଳରେ ଦାର୍ଶନିକତା, ବ୍ୟକ୍ତିକୈନ୍ଦ୍ରିକତା ପ୍ରାଧାନ୍ୟ ଲଭ କରିଛି । ଐତିହାସିକ ରୋମାନ୍ସ, ପ୍ରକୃତିବାଦୀ, ରୋମାଣ୍ଟିକ୍ ଅଥବା ବାସ୍ତବବାଦୀ ଉପନ୍ୟାସ ବଦଳରେ ଚେତନା ପ୍ରବାହ ମୂଳକ ଉପନ୍ୟାସ, ସ୍ଥିତିବାଦୀ ଉପନ୍ୟାସ, ଅଣ-ସାମାଜିକ (Asocial) ଉପନ୍ୟାସ ଏବଂ ଅବଶେଷରେ ଶାସ୍ତ୍ର-ବିରୋଧୀ ଉପନ୍ୟାସରେ ବିଶ୍ୱସାହିତ୍ୟର ଦିଗନ୍ତ ରେଖା ବର୍ଣ୍ଣିଳ ହୋଇଉଠିଛି । ବାଲ୍‌ଜାକ୍‌ଙ୍କ ଉପନ୍ୟାସର 'realism' ଅପେକ୍ଷା ଗାର୍ସିଆ ମାର୍କ୍ୱେଜ୍‌ଙ୍କ 'Magic realism' ପାଠକ ପାଇଁ ଅଧିକ ଆକର୍ଷଣୀୟ ମନେ ହେଉଛି । ଏକଦା ସାମାଜିକ ଅର୍ଥନୈତିକ ବାସ୍ତବତା (Socio-economic realism) ଉପନ୍ୟାସର ପ୍ରଧାନ ଭବବସ୍ତୁ ଥିଲା, ଆଜି ମନସ୍ତାତ୍ତ୍ୱିକ ବାସ୍ତବତା Psychlogical realism) ଉପନ୍ୟାସର ତାତ୍ପର୍ଯ୍ୟପୂର୍ଣ୍ଣ ଭବବସ୍ତୁ ଭବରେ ଆଦୃତ ହେଉଛି । ବାସ୍ତବବାଦୀ ଔପନ୍ୟାସିକ ବାଲଜାକ୍ କିମ୍ବା ଡିକେନ୍ସ ଙ୍କ ଉପନ୍ୟାସର ବର୍ଣ୍ଣନାତ୍ମକ କାହାଣୀ ବିନ୍ୟାସ ଯେପରି ହୋଇଥିଲା, ଯାଦୁକରୀ ବାସ୍ତବତାର ପ୍ରବକ୍ତା ମାର୍କ୍ୱେଜ୍‌ଙ୍କ ଉପନ୍ୟାସର କାହାଣୀ ବିନ୍ୟାସ ତାଠାରୁ ଭିନ୍ନ ହେବା ସ୍ୱଭବିକ୍ ।

'ଛମାଣ ଆଠଗୁଣ୍ଠ' ଓ 'ମାଟିମଟାଳ' ଦୁଇଟି ଗ୍ରାମ-ଭିତ୍ତିକ ଓଡ଼ିଆ ଉପନ୍ୟାସ ହେଲେ ମଧ୍ୟ ଏ ଦୁଇ ଉପନ୍ୟାସର କାହାଣୀ ବିନ୍ୟାସ ଶୈଳୀ ନିଃସନ୍ଦେହରେ ଭିନ୍ନ ଓ ପୃଥକ । 'ଛମାଣ ଆଠଗୁଣ୍ଠ'ର ସରଳ ବର୍ଣ୍ଣନାତ୍ମକ କାହାଣୀ ବିନ୍ୟାସ ଓ ଦୃଶ୍ୟସଜ୍ଜାର ଅଭିନବତ୍ୱ 'ମାଟି ମଟାଳ'ରେ ନାହିଁ । ସେହିପରି 'ମାଟିମଟାଳ'ର ବର୍ଣ୍ଣନାର ଫେନିଳତା, ଭଷାର ଲବଣ୍ୟ; ବିସ୍ତୃତ କ୍ୟାନ୍‌ଭସରେ ଯୁଗପରିବର୍ତ୍ତନର ଛବିକୁ ମହାକାବ୍ୟିକ ଫ୍ରେମ୍‌ରେ ବାନ୍ଧରଖି ପାରିବାର କଳାତ୍ମକ ସାର୍ଥକତା 'ଛମାଣ ଆଠଗୁଣ୍ଠ'ରେ ଅନୁପସ୍ଥିତ ।

ଆଜିକାଲି କେହି କାହାଣୀ କହିବାପାଇଁ ଉପନ୍ୟାସ ଲେଖେ ନାହିଁ । ଉପନ୍ୟାସ ଲେଖିବା ପଛରେ ଥାଏ ଦାର୍ଶନିକ-ପ୍ରେରଣା, କିନ୍ତୁ ଦର୍ଶନ-ତତ୍ତ୍ୱ ଯେଉଁଠି ଉପନ୍ୟାସର କାହାଣୀକୁ ଗ୍ରାସ କରିଯାଏ, ସେଠାରେ ଆଉ ଯାହାକିଛି ହେଉନା କାହିଁକି ଆଉ ଉପନ୍ୟାସ ହୋଇ ରହେ ନାହିଁ । ଜାଁ ପଲ୍ ସାର୍ତ୍ତଙ୍କ 'ନସିଆ' ଉପନ୍ୟାସର ସମାଲୋଚନା କଲବେଳେ ଆଲ୍‌ବେୟର କାମୁ ଥରେ ଲେଖିଥିଲେ— 'ଉପନ୍ୟାସ ଦର୍ଶନ ଛଡ଼ା ଆଉକିଛି ନୁହେଁ; ବିଭିନ୍ନ ଚିତ୍ରକଳ୍ପକୁ ଆଧାର କରି ଉପନ୍ୟାସ ମଧ୍ୟରେ ଦର୍ଶନ ଆଖ୍ୟାନ ବସ୍ତୁରେ ପରିଣତ ହୁଏ । କିନ୍ତୁ ଦର୍ଶନ ଯଦି ଚରିତ୍ର ଓ କାହାଣୀକୁ ଘୋଡ଼ାଇ ପକାଇ ନିଜେ ଅଧିକ ପ୍ରକଟିତ ହୁଏ, ତାହେଲେ କାହାଣୀ ତାର ପ୍ରାମାଣିକତା ହରଇ ବସେ ଏବଂ ଉପନ୍ୟାସଟି ପ୍ରାଣହୀନ ହୋଇଉଠେ ।'

କାମୁ ନିଜେ ଜଣେ ଶାସ୍ତ୍ରବିରୋଧୀ ଔପନ୍ୟାସିକ । ତାଙ୍କ 'Out Sider ଓ Plague' ପ୍ରଥାସିଦ୍ଧ ବର୍ଣ୍ଣନାତ୍ମକ ଶୈଳୀରେ ରଚିତ ହୋଇ ନାହିଁ । ହେଲେ ସେ କେଉଁଠାରେ ହେଲେ ମଧ୍ୟ ତାଙ୍କର ଉଦ୍ଭଟ ଦର୍ଶନ ତତ୍ତ୍ୱକୁ ଉପନ୍ୟାସରେ ବଡ଼ କରି ଦେଖାଇ ନାହାନ୍ତି । ଘଟଣା ଚରିତ୍ର ଠାଏ ଠାଏ

ପ୍ରତୀକ ଓ ରୂପକରେ ପରିଣତ ହୋଇଛନ୍ତି । କିନ୍ତୁ ଉପନ୍ୟାସରେ ବର୍ଣ୍ଣିତ ଘଟଣା ଉଚ୍ଚାରିତ ସଂଳାପ ମଧ୍ୟରେ ଜୀବନର ବାସ୍ତବତା ଅପେକ୍ଷା ଉଦ୍ଭଟତା ହିଁ ଅଧିକ ପ୍ରକଟିତ ହୋଇ ଉଠିଛି । ତାଙ୍କର ଲକ୍ଷ୍ୟ (motive) ସଫଳ ହୋଇଛି, ଅଥଚ ଦାର୍ଶନିକ ରଚନା ମଧ୍ୟରେ ଉପନ୍ୟାସ ତାର ସ୍ୱରୂପ ହରାଇ ନାହିଁ ।

ପରୀକ୍ଷାମୂଳକ ଉପନ୍ୟାସ ଭାବରେ ଆମେରିକାନ୍ ଔପନ୍ୟାସିକ ଉଇଲିୟମ ଗ୍ୟାସ ଙ୍କ ସାଂପ୍ରତିକ ଉପନ୍ୟାସ 'Willy Masters Lonesome Wife' ପ୍ରଧାନ ଚର୍ଚ୍ଚାର ବିଷୟ ହୋଇଛି । ବର୍ଣ୍ଣନାତ୍ମକ କାହାଣୀବିନ୍ୟାସ ଶୈଳୀ ବଦଳରେ ଗ୍ୟାସ୍ ଏହି ଉପନ୍ୟାସର ଛୋଟ ବଡ ଅକ୍ଷର (Type Face) ବହିସାର ଯଥେଚ୍ଛା ପ୍ରୟୋଗ କରଯାଇଛି । ଏହା ବ୍ୟତୀତ ବହିର ପୃଷ୍ଠାରେ ନାନା ପ୍ରକାର ଡ୍ରଇଂ ଓ ରଂଗ ମଧ୍ୟ କରଯାଇଛି । ଏହାର କାରଣ ସଂପର୍କରେ ଲେଖକଙ୍କର କୈଫିୟତ୍ ହେଲା—'ସାଂପ୍ରତିକ ଉପନ୍ୟାସରେ ଇନ୍ଦ୍ରିୟାନୁଭୂତିର ଏକ ବିଶିଷ୍ଟ ଭୂମିକା ରହିଛି । କାଗଜର ବିଭିନ୍ନ ରଂଗ ଓ ନାନା ମାପର ଅକ୍ଷର (Type Face) ପାଠକର ଏହି ଅନୁଭୂତିକୁ ଜାଗ୍ରତ କରିପାରେ । Narrative technique ବା ବର୍ଣ୍ଣନାତ୍ମକ ଗଦ୍ୟ ଶୈଳୀର ଲିଖିତ ପାରମ୍ପରିକ ଉପନ୍ୟାସର ଏହି ଧରଣର ଉପନ୍ୟାସ ହିଁ ହେଉଛି ଆଦର୍ଶ ବିକଳ୍ପ ।

କିନ୍ତୁ 'Willy Masters Lonesome Wife' ଉପନ୍ୟାସର ସୀମାବଦ୍ଧ ଲୋକପ୍ରିୟତା ଦୃଷ୍ଟିରୁ ଏହାର ଲେଖକ ଉଇଲିୟମ୍ ଗ୍ୟାସ୍ଙ୍କ ଉକ୍ତି ପଛରେ କୌଣସି ବଳିଷ୍ଠ ଯୁକ୍ତି ଥିବାଭଳି ମନେହୁଏ ନାହିଁ ।



# ସମୟ ଗଡିଯାଉଛି

ଡକ୍ଟର ଭୁବନେଶ୍ୱର ବେହେରା

ପ୍ରିୟ ଡଃ ସାହୁ,

ଆପଣଙ୍କ ଚିଠିରୁ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉତ୍ସବ ପାଳିତ ହେଉଥିବା ଜାଣି ଯେତେ ଖୁସୀ ହେଲି ତା'ଠାରୁ ବେଶୀ ଆଶ୍ଚର୍ଯ୍ୟ ହେଲି । ବିଶ୍ୱାସ ବି କରିପାରିଲିନି ଯେ ଏ ଭିତରେ ଏତେ ସମୟ ଗଡଯାଇଛି । ସେଦିନର କଥାସବୁ ମନେ ପଡ଼ଲେ କାଲି କାଲି ପରି ଲାଗେ । ମୁଁ ରଉରକେଲାରୁ ଆସି ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଭାବେ ଯୋଗଦେଇ ଥାଏଁ; ଗୋପାଳ ବାବୁ ଏବଂ ଉଦ୍‌ଗାତା ବାବୁ ବୁଢ଼ାରଜା ପାହାଡ଼ ପାଖର ବିଦ୍ୟାଳର ଅଫିସକୁ ଆସି ମୋତେ ତାଙ୍କ ବିଭାଗୀୟ ସେମିନାରରେ ଯୋଗଦେବାପାଇଁ ନିମନ୍ତ୍ରଣ ଦେଇ ଗଲେ । ଆଉ ମୁଁ ମଧ୍ୟ ଖୁସୀରେ ଯାଇଥିଲି । ପାଟ୍ନା ହାଉସ୍‌ରେ ପିଲଙ୍କ କି ଦୟନୀୟ ଅବସ୍ଥା

ଉପାଧ୍ୟୁତର ବିଭାଗ-ମୁଣ୍ଡ ଉପରେ ଛାତ ଅଛି କିନ୍ତୁ ପିଲାମାନେ ସତେ ଯେମିତି ବର୍ଷା ଦିନରେ ବି ଆକାଶ ତଳେ ପାଣିଧାରକୁ ଆଡେଇ ଠେଲାପେଲା ହୋଇ ବସିଛନ୍ତି, ମନେହେଉଛି ସେ ଅବସ୍ଥା ପ୍ରତି ତାଙ୍କର ନଜର ବି ନାହିଁ । ମୁଁ କିନ୍ତୁ ସେ ସେମିନାର ର ପ୍ରାରମ୍ଭିକ ଭାଷଣ ଶୁଣିଲାବେଳେ ଭାରି ଅସ୍ୱସ୍ତି ବୋଧ କରୁଥିଲି । ତାପରେ ଆରମ୍ଭ ହେଲା ପିଲାଙ୍କ କବିତା, ଏବଂ ପ୍ରବନ୍ଧ ପାଠ— ଗୋଟାକ ପରେ ଗୋଟାଏ—ଆଲୋଚନା ସମାଲୋଚନା । କି ଜୀବନ୍ତ ଥିଲା ସେ ସେମିନାର । କେତେ ଉଚ୍ଚକୋଟୀର ଲେଖାସବୁ !

ଜଳଖିଆ ଖାଇଲାବେଳେ କେତେଜଣଙ୍କୁ ପଚାରୁଥିଲି ସେମାନେ ତାଙ୍କ ଲେଖା କେଉଁ ମାସିକ ପତ୍ରିକାକୁ ଦେବେ— ସେମାନେ କିନ୍ତୁ କିଛି ଉତ୍ତର ନଦେଇ ମୁହଁ ଚୁହାଁ ଚୁହିଁ ହେଉଥିଲେ । ଶେଷରେ କେହି ଜଣେ କହିଲା —'ଶତଭିଷା' ।

କାହିଁ ମୁଁ ତ ସେତିମି କୌଣସି ପତ୍ରିକାର ନାମ ଶୁଣିନି ତେବେ ଜଣେ ଇଞ୍ଜିନିୟର ଭାବରେ ପତ୍ରପତ୍ରିକା ତଥା ଓଡ଼ିଆ ସାହିତ୍ୟରେ ମୋ ଦଖଲ ଅବା କେତେ-ମୁଁ ସେମାନଙ୍କୁ ମୁହଁକୁ ଚାହୁଁଥିଲି । ମନେ ହେଲା ଗୋପାଳ ବାବୁ ସୁଯୋଗ ଉଣ୍ଡୁଥିଲେ କହିଲେ ନାଁ । ଲେଖାଇଲା ବେଳେ ପିଲାମାନେ ଯେଉଁ ମାଗାଜିନ୍ ଚାନ୍ଦା ଦେଇଛନ୍ତି ସେଥିରେ କେଉଁଠି 'ଶତଭିଷା' ବାହାରି ପାରିବ, ବିଶ୍ୱ-ବିଦ୍ୟାଳୟ ଯଦି ଆର୍ଥିକ ସାହାଯ୍ୟ ନ ଦିଏ ।

'ଶତଭିଷା' ଯେ ବିଭାଗୀୟ ପତ୍ର ଜାଣି ମୁଁ ଆଶ୍ୱସ୍ତ ହେଲି । ଏଥର ଯେତେବେଳେ କହିଲି ମୁଁ ବିଭାଗୀୟ ମୁଖପତ୍ର କଥା କହୁନି— ପଚାରୁଛି 'ଝଙ୍କାର', 'ଆସନ୍ତାକାଲି' ପରି କେଉଁ ମାସିକ ପତ୍ରିକାରେ ପ୍ରକାଶ କରିବେ । ପ୍ରାୟ ସମସ୍ତେ କହି ଉଠିଲେ 'ପ୍ରତିଷ୍ଠିତ ଲେଖକ ନହେଲେ ସେମାନେ ଆମ ଲେଖା ଛାପିବେ କେଉଁଠି ସାର୍ ।'

ଦବିଲା ମନନେଇ ମୁଁ ସେଦିନ ପାନ୍ଥଶାଳା ହାଉସ୍‌ରୁ ଫେରିଥିଲି ଆଉ ମୋ ନିଜ ଅନୁଭୂତି କଥା ମନେ ପକାଉଥିଲି । ରେଭେନସା କଲେଜରେ ପଢ଼ିଲା ବେଳେ ମୋ ଲେଖା ବି ଯଦି କୌଣସି ପତ୍ରିକାରେ ବାହାରି ଥାଆନ୍ତା । କେହି ଛାପି ନ ଥିଲେ ବୋଲି ମୁଁ ଲେଖା ଲେଖି ହିଁ ବନ୍ଦ କରିଦେଇ ଥିଲି ।

ସେହି ଚିନ୍ତାଧାରା ହିଁ ମୋତେ ବିଶ୍ୱବିଦ୍ୟା-ଳୟର ସିଣ୍ଡିକେଟ୍ ତଥା ସିନେଟକୁ ଅନୁରୋଧ କରି ମାସିକ ପତ୍ରିକାଟିଏ ପ୍ରକାଶ କରିବାକୁ ପ୍ରେରଣା ଯୋଗାଇଥିଲା । 'ଅଧିକା ଖର୍ଚ୍ଚ ହେବ ସତ କିନ୍ତୁ ଛାତ୍ରଙ୍କୁ ଲେଖକ କରି ଗଢ଼ି ତୋଳିବାରେ ଆମର ଯେ ଗୋଟାଏ କର୍ତ୍ତବ୍ୟ ରହିଛି' ଥିଲା ମୋର ଯୁକ୍ତି ଓ ଅନୁରୋଧ ।

'ସପ୍ତର୍ଷି' ଜନ୍ମନେଲା ଛାତ୍ର ଏବଂ ଅଧ୍ୟାପକ ମାନଙ୍କ ଓଡ଼ିଆ ଲେଖା ସହ ଅଞ୍ଚଳରେ ଥିବା ଅପ୍ର-କାଶିତ ଲେଖା ସମୂହର ପ୍ରକାଶନ କରିବା ଉଦ୍ଦେଶ୍ୟ ନେଇ, ଅଞ୍ଚଳର ଲୋକକଥା ଏବଂ ଲୋକ ଗୀତ ସଂକଳନ କରି ଲୋକଲୋଚନକୁ ଆଣିବା ପାଇଁ, ଅଞ୍ଚଳର କୃତୀ ସନ୍ତାନଙ୍କ ଅବଦାନ ସମ୍ବନ୍ଧରେ ନୂଆ ପୀଢ଼ିକୁ ସଚେତନ କରାଇଦେବା ପାଇଁ, ଓଡ଼ିଆ ସାହିତ୍ୟର ବିକାଶରେ ସକ୍ରିୟ ଭୂମିକା ନେବା ପାଇଁ ।

ସେ ଉଦ୍ଦେଶ୍ୟ କଣ ପୂରଣ ହୋଇ ପାରିଛି । କିଛିଦିନ ତଳେ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ଜଣେ ପୁରାଜନ ଛାତ୍ର ଶ୍ରୀ ଆଚାର୍ଯ୍ୟ ବୁଲିବାକୁ ଆସି କଥା ଛଳରେ ସେ କହୁଥିଲେ ଯେ, ଏଇ କେତେ ବର୍ଷ ଭିତରେ ସେ କଳାହାଣ୍ଡିରୁ ବେଶ୍ କିଛି ଅପ୍ରକାଶିତ ତାଳପତ୍ର ପୋଥି ସଂଗ୍ରହ କରିବା ସଂଗେ ସଂଗେ ଗୁଡ଼ାଏ ଲୋକକଥା ଏବଂ ମେରିଆ ଗୀତ ପ୍ରଭୃତି ଲୋକଗୀତ ସଂଗ୍ରହ କରିଛନ୍ତି । କିନ୍ତୁ କୌଣସି ପତ୍ରିକା ଧାରାବାହିକ ରୂପେ ସେଗୁଡ଼ିକୁ

ପ୍ରକାଶ କରିବାକୁ ଇଚ୍ଛା ପ୍ରକାଶ କରୁନାହାନ୍ତି । ମୁଁ ସପ୍ତର୍ଷି କଥା ଉଠାଇଥିଲି ଆଉ ସେ ଉତ୍ତର ଦେଲେ 'ସପ୍ତର୍ଷି' ପ୍ରକାଶନର ଧାରାବାହିକତା ଆଉ କାହିଁ ଯେ ?

ଆମର ଦଶା କଣ ତେବେ ବଦଳିବ ନି ? ମୁଁ ପୁଣି ଥରେ ସେ ପୁରୁଣା କଥା ସବୁ ଭାବି ଚାଲିଥିଲି । ଆଉ ମନେ ପଡୁଥିଲା 'ଜ୍ଞାନପିଠ' ବିଜେତା ସୀତାକାନ୍ତଙ୍କ ଟି.ଭି. ସାକ୍ଷାତକାର ବେଳର ସେଦିନର କଥା । ପ୍ରଶ୍ନ କରଗଲା 'ଏକ ଉଚ୍ଚ-କୋଟୀର ଲେଖକ ହୋଇ ଆପଣ ସରକାରୀ ଚାକିରୀ କରୁଛନ୍ତି କାହିଁକି ?' ତାଙ୍କର ଉତ୍ତର ଥିଲା 'ଓଡିଶାରେ କେବଳ ସାହିତ୍ୟ ସାଧନା କରି କେହି କୁଟୁମ୍ବ ପ୍ରତିପୋଷଣ କରି ପାରିବନି ।' କେଡେ ସତ କଥା । ଏତେ ଉଚ୍ଚକୋଟୀର ସାହିତ୍ୟିକଙ୍କ ଯଦି ଏହି ଦଶା-ସାଧାରଣ ମାନର ଲେଖକଙ୍କ ଅବସ୍ଥା କଣ ଅବା ହେବ ? ଓଡ଼ିଆ ଭାଷା ଏବଂ ସାହିତ୍ୟର ବିକାଶ ଦିଗରେ ସମାଜ ଏବଂ ସରକାରଙ୍କ ଉଦାସୀନତାକୁ ଲକ୍ଷ୍ୟ କଲେ କେମିତି ଗୋଟିଏ ଅସହାୟ ବୋଧ ରହି ଆସେ ।

ଅପ୍ରକାଶିତ ତାଳପତ୍ର ପୋଥିମାନ କିନ୍ତୁ ଚେତାଇଦିଏ ଯେ ଅଜ୍ଞାତ ବାସ କରି ମଧ୍ୟ ଆମ ପୂର୍ବପୁରୁଷମାନେ କୌଣସି ସ୍ୱୀକୃତି ପ୍ରାପ୍ତି ବିନା ସାହିତ୍ୟ-ସାଧନ କରି ଚାଲିଥିଲେ । ଆଜିର ସମାଜରେ ସେଦିନର ସରଳ ଜୀବନଯାପନ ଏବଂ ଉଚ୍ଚ ଚିନ୍ତନର ପରଂପରା ପ୍ରାୟ ପଛେଇ ଗଲାଣି । ତଥାପି ଆପଣଙ୍କ ବିଭାଗର ଅଧ୍ୟାପକ ତଥା ଛାତ୍ର-ମାନେ ଯେ ସେ ଚିନ୍ତା ଏବଂ ଚେତନାକୁ ବଞ୍ଚାଇ ରଖିବା ପାଇଁ ଚେଷ୍ଟିତ ଅଛନ୍ତି ସେକଥା ଜାଣିଲେ, ମୋପରି ଜୀବନରୁ ଓହରି ଯାଉଥିବା ଅନେକଙ୍କୁ ସାନ୍ତ୍ୱନା ମିଳେ ।

ଭଗବାନ ଆପଣଙ୍କ ମଙ୍ଗଳ କରନ୍ତୁ ।

ପୂର୍ବତନ କୁଳପତି
ସଂବଲପୁର ବିଶ୍ୱବିଦ୍ୟାଳୟ



# ତୁମେ ଆସୁଛ

ଡକ୍ଟର ଚିତରଂଜନ ମିଶ୍ର

ତୁମେ ଆସୁଛ
ତୁମେ ଆସୁଛ ବୋଲିତ
ବାଲିର ଉତ୍ତୁଙ୍ଗରେ ଝିଝି ଝିଝି
ଆହୁରି ସବୁଜ ଦିଶୁଛି ଲଙ୍କା ଆମ୍ବ ବଣ
ବଉଳର ବାସ୍ନାପରି
ମହକୁଛି ସାଘ ଖରବେଳ ।
ତୁମେ ଆସୁଛ ବୋଲି ତ
ବିତି ଯାଉଛି ବର୍ଷ
ବର୍ଷି ଯାଉଛି ବର୍ଷା
ବହି ଯାଉଛି ନଈ
ପୂର୍ଣ୍ଣମୀରେ ଗୋଲ୍ ଦିଶୁଛି ଚନ୍ଦ୍ର
ଯେମିତି ସବୁ ଠିକ୍ ଚଳିଛି ପୃଥିବୀରେ
ବହୁ ଦିନରୁ ତୁମେ ଆସୁଛ
ମୋ ଭଲ ପାଇବାର ବୟସ ପରି
ଚିରହରିତ୍ ଧରଣୀର ରଙ୍ଗ ପରି
ସ୍ୱପ୍ନପରି ଶେଷ ପ୍ରହରର ।
ଯେତେଥର ଭାଂଗି ଯାଇଛି ଘର ଭୂମିକମ୍ପରେ
ଯେତେଥର ଗୁଳି ଫୁଟିଛି ସୀମାନ୍ତରେ
ଯେତେଥର ଆକାଶ ଚିରି ଯାଇଛି
କ୍ଷେପଣାସ୍ତ୍ରର ଅଗ୍ନିସ୍ରୋତରେ
ପ୍ରଳୟରେ ପଦ୍ମପତ୍ର ପରି
ତୁମେ ଭସିଛ ସାମନାରେ
କୂଳର ଲହରୀ ପରି ଧୋଇ ଦେଇଛ ପାଦ

ଓଦା କରିଛ ବାଲି
ସବୁ ଆପଦରେ ଆହ୍ଵା ଗଢଣେ ପରି
ତୁମେ ଶୁଭିଛ
ଏମିତି କେଉଁ ଯୁଗରୁ ତୁମେ ଆସୁଛ ।
କେତେ ବସନ୍ତ ଋଲିଗଲଣି
ଫେରିଯାଉଥିବା ଲହରୀ ପରି ସମୁଦ୍ରକୁ
ସମ୍ଭବତଃ ତୁମ ସହରକୁ
ଏବେ ଢଳେଇ ଛାତରେ ଢଳି ଯାଉଛି ଖପ
ଛାଇ ବୋଲି ଟିକେ ନାହିଁ
ତୁମେ ବୋଧେ
ଚଳ ମେଘଟିଏ ହୋଇ ଆସୁଛ
କିଏ ଜାଣେ କେବେ ପହଞ୍ଚିବ
କିନ୍ତୁ ତୁମେ ଆସୁଛ
ତୁମ ନ ଆସିବାରେ ବି
ତୁମେ ଆସୁଛ ।

ଅଧ୍ୟାପକ, ଇଂରେଜୀ ବିଭାଗ
ଏସ୍. ସି. ଏସ୍. କଲେଜ, ପୁରୀ



# ଗଙ୍ଗାଧର କାବ୍ୟରେ ସ୍ଥାନୀୟ ରୂପରଂଗ

ଡକ୍ଟର ପ୍ରଭାତୀ ରଥ

"ହେ ପ୍ରଭେଶ୍ଵରୀ; ଯେଉଁ ଜାତି ଏବେ ବି ଶୈଶବେ
କୃଷିଗତ ସମାଜର ଅଚଞ୍ଚଳ ଧୀର ଗ୍ରାମୋତ୍ସବେ
ସ୍ଥଗିତ ଚରଣେ, ତୁମେ ତା'ର ବୀଣାକାର
ପ୍ରଭାତର ଗାଥାକାର । ମଧ୍ୟାହ୍ନର ଖରତାପ ଜାଳ
ସଂଘର୍ଷ ପୀଡିତ ମନ, ନାନା ଦ୍ଵନ୍ଦେ ବିକ୍ଷିପ୍ତ ଚଞ୍ଚଳ
ଜୀବନ ତୁମକୁ ଋହେଁ; ହେ ନିର୍ଲିପ୍ତ ସ୍ଵପ୍ନ ।"—

ଗଙ୍ଗାଧର ମେହେରଙ୍କ ସଂପର୍କରେ କବି ସଚ୍ଚି ରାଉତରାୟଙ୍କ ଏ ଉକ୍ତିଟିକୁ ସ୍ମରଣ କରଯାଇ-ପାରେ । କବି ଗଙ୍ଗାଧର ସଂବାଳର ଭାଷ୍ୟକାର —ପ୍ରଚଣ୍ଡ ମଧ୍ୟାହ୍ନର ରୂପଙ୍କର ନୁହନ୍ତ ତାଙ୍କ ସୃଷ୍ଟିରେ ସବୁଜ ଶାଦ୍ୱଳର ଅନୁପମ ପରିପ୍ରକାଶ । ସବୁ ସୁନ୍ଦର ସବୁ ରୁଚିର । କାବ୍ୟ ଜଗତରେ ସ୍ଥାନୀୟ ରୂପ-ରଂଗର ପରିପ୍ରକାଶ ଘଟିଥିଲେ ହେଁ ସାର୍ବଜନୀନ-ତାର କାଉଁରୀ ସ୍ପର୍ଶରେ ତାହା ସୁଶୋଭିତ । ଏହାହିଁ ବାଣୀପୁତ୍ରର ନିୟତି ।

ଅଥର୍ବ ବେଦରେ କବି ଭୂମିପୁତ୍ର ରୂପେ ବର୍ଣ୍ଣିତ । ପୁତ୍ରୋଃହଂ ପୃଥିବ୍ୟାଂ ପରି ଉକ୍ତିରେ ମାଟି ପ୍ରତି କବିର ଆକର୍ଷଣ ସୂଚିତ । ବିଶ୍ୱକବି ରବୀନ୍ଦ୍ର-ନାଥଙ୍କ ଭାଷାରେ— "ଏଇ ଧୂଳୋ ମାଟିର ଘାସେର ମଧ୍ୟେ ଆମି ହୃଦୟ ଢେଲେ ଦିଏ ଗେଲାମ୍ ବନସ୍ପତି ଔଷଧିର ମଧ୍ୟେ, ଯାରା ମାଟିର କୋଲେର କାଛେ ଆଛେ ଯାରା ମାଟିର ହାତେ ମନୁଷ ଯାରା ମାଟିତେ ହାଁଟତେ ଆରମ୍ଭ କରେ ଶେଷ କାଲେ ମାଟିତେଇ ବିଶ୍ରାମ କରେ ଆମି ତାଦେର ସକଲେର ବନ୍ଧୁ, ଆମି କବି ।" ଏଠାରେ ପରିବେଶ ସହିତ, ଭୂମି ସହିତ କବିର ସଂପର୍କ ବି ପ୍ରତୀକିତ ।

ପ୍ରକୃତିର ସବୁଜିମା ଅନୁପମ ଦୃଶ୍ୟରାଜି । ନୀଳ ଆକାଶ, ପ୍ରଶାନ୍ତ ସାଗରର, ଉତ୍ତୁଙ୍ଗ ଭୂଧର କଳନାଦିନୀ ତଟିନୀ ସକଳ ଦୃଶ୍ୟ କବି ଚେତନାରେ ବାନ୍ଧ ହୋଇଯାଏ ତାର କବି କାବ୍ୟ ଉପାଦାନ ରୂପେ ଗ୍ରହଣ କରେ । କ୍ଷଣିକର ଭବାବେଗକୁ ନେଇ ଚିରନ୍ତନ ସଂପର୍କଟିଏ ଯୋଡଦିଏ । ସେଥିରେ ମିଦ୍ଧ୍ୟାନୁଭବର ମହିମାମୟ ଅନୁଭବକୁ ଉର୍ଦ୍ଧ୍ୱର ଉପଲବ୍ଧି ସହ ସମୀଭୂତ କରିନିଏ ।

କବି ଗଙ୍ଗାଧର ବରପାଲିରେ ଭୂମିଷ୍ଠ ହୁଅନ୍ତ । ତାଙ୍କୁ ପାରିପାର୍ଶ୍ୱିକ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡେ । ସଂଗ୍ରାମମୟ ଜୀବନ ପରିଧିରେ ପ୍ରତିଭାର କାଉଁରୀ ସ୍ପର୍ଶରେ ସବୁ ସୁନା ପାଲଟିଯାଏ। ତାଙ୍କ କାବ୍ୟ ଜଗତରେ ମାଟି ଓ ମନୁଷ୍ୟ, ପୃଥିବୀ ଓ ଆକାଶ ଏକାକାର ହୋଇଯାଏ । ସବୁଠି ସମ-ନ୍ୱୟର ଅଭିନବ ଦୃଶ୍ୟଟିଏ ପ୍ରସରି ଯାଏ । ବରପାଲିରୁ ବାଲ୍ମୀକି ଆଶ୍ରମକୁ କବି ଦୃଷ୍ଟିରେ ମହାନଦୀ ହୁଏ । ତମସା, ବ୍ରଜମୋହନ ପଣ୍ଡାଙ୍କ ଉଦ୍ୟାନ ହୋଇଯାଏ ବାଲ୍ମୀକିଙ୍କ ଉଦ୍ୟାନ । ତଥାପି ସମକାଳୀନ ଜୀବନଚର୍ଯ୍ୟା କାବ୍ୟରେ ରୂପ-ଦେଲବେଳେ ସ୍ଥାନୀୟ ରୂପରଂଗଟି ଫୁଟି ଉଠେ । ଏ ପରିପ୍ରେକ୍ଷୀରେ ଗଙ୍ଗାଧରଙ୍କ କବିତାରେ ସ୍ଥାନୀୟ ରୂପଚର୍ଚ୍ଚା ବିଚାର କରଯାଇ ପାରେ ।

ଗଙ୍ଗାଧର ଥିଲେ ସଂସ୍କୃତି ପ୍ରେମୀ କବି । ଭାରତୀୟ ସଂସ୍କୃତିର ଜଣେ ଯାନ୍ତ୍ରିକ କାବ୍ୟ ପୁରୁଷ । ତାଙ୍କ କାବ୍ୟ ଦର୍ପଣରେ ଭାରତୀୟ ଜୀବନ ଓ ସାଂସ୍କୃତିକ ଚିତ୍ର ··· ପ୍ରତିଫଳିତ । ଆକାଶରେ ଋତୁ ବଦଳିଲା ପରି ବେଳେ ବେଳେ ସ୍ଥାନିକତା କାବ୍ୟ କବିତାରେ ଧରପଡେ । ତାଙ୍କ ବର୍ଣ୍ଣିତ ସ୍ଥାନୀୟ ଚିତ୍ରକୁ ମୁଖ୍ୟତଃ ତିନୋଟି ଦିଗରୁ ବିଶ୍ଳେଷଣ କରଯାଇପାରେ । ପ୍ରଥମତଃ କାବ୍ୟକୃତିରେ ଇତି-ହାସ, କିମ୍ବଦନ୍ତୀ, ଜନଶ୍ରୁତିର ସମାବେଶ । ପ୍ରଥମତଃ ସ୍ଥାନୀୟ ନଦ, ନଦୀ, ପର୍ବତର ଦୃଶ୍ୟ, ଦେବ-ଦେବଦେବୀଙ୍କ ବର୍ଣ୍ଣନା ପରିପ୍ରେକ୍ଷୀରେ ପାରିପାର୍ଶ୍ୱିକ ରୂପରେଖ ଏବଂ ତୃତୀୟତଃ ସ୍ଥାନୀୟ ଚଳଣି, କୃଷିଭିତ୍ତିକ ସମାଜ ଓ ପ୍ରଚଳିତ ଭାଷା ପ୍ରୟୋଗର ଅପୂର୍ବ ପରିପ୍ରକାଶ ।

ଏ କ୍ଷେତ୍ରରେ କବିଙ୍କ ଭୌଗୋଳିକ ସଚେ-ତନତାକୁ ସତ୍ୟ କରଯାଇ ପାରେ । କବିମାତ୍ରେ ଭୌଗୋଳିକ ପରିବେଶର ରୂପକର । ସ୍ଥାନୀୟ ସଚେତନତା ମନର ଭୂଗୋଳରେ ଚିତ୍ରିତ ହୋଇଥାଏ ।

"ଉତ୍କଳ ଲକ୍ଷ୍ମୀ" କାବ୍ୟଟି ଗଂଗାଧରଙ୍କ ଭୌଗୋଳିକ ମାନସିକତାର ସଫଳ ଫଳଶ୍ରୁତି । ଏଠାରେ ଓଡ଼ିଶାର ଭୂଗୋଳ, ସ୍ଥାନୀୟ ପ୍ରାକୃତିକ ଦୃଶ୍ୟ ଓ ଐତିହ୍ୟ ବିଧୃତ ଜୀବନଭୂମି ସହ

ସମକାଳୀନ ଯଶସ୍ୱୀ ବ୍ୟକ୍ତିମାନେ କାବ୍ୟିକ ଚେତନାର ଉତ୍ସ ହୋଇପଡନ୍ତି । ଚିଲିକା, ଅଂଶୁପା ହୁଏ ଉତ୍କଳ ଲକ୍ଷ୍ମୀଙ୍କର "ପ୍ରିୟ କେଳି ସରୋବର", ଏବଂ ପ୍ରଧାନ ପାଟ ହୁଏ ଉତ୍କଳ ଲକ୍ଷ୍ମୀଙ୍କ ରତ୍ନ-ସୀମନ୍ତ । କବି ସ୍ଥାନିକତାକୁ ଅଧିକ ସ୍ପଷ୍ଟ କରିବାକୁ ଯାଇ କହିବସନ୍ତି—

କେମନ୍ତ କୌଶଳେ ଗୋଧୂଳି ମସ୍ତକେ
କାଚ ଖଣ୍ଡ ଦେଇ ଖଚି
ତୋ ଲାଗି ଧୋଇଛି "ଗୁମ୍‌ଦହ" ଗର୍ଭେ
ଦିବ୍ୟ ମଥାମଣି ସଞ୍ଚି ।"

ସମ୍ବଲପୁର ସ୍ଥିତ ମହାନଦୀ ଗୁମ୍‌ଦର୍ହ ହୋଇ ଯାଏ ରତ୍ନ ଭଣ୍ଡାର । କାଶୀବାସୀ ବିଶ୍ୱନାଥ ହୁଅନ୍ତି ଏକାମ୍ର ଲିଙ୍ଗରାଜ ବିଗ୍ରହ । 'ଜାହ୍ନବି ଆସିଲେ କରତବ ବେଶେ ଚିତ୍ରୋତ୍ପଳା ନାମ ଧରି" ପରି ଉକ୍ତିରେ ମହାନଦୀର ପାବନତ୍ୱ ପ୍ରତିପାଦିତ । ପୁରାଣର ଦେବ କଥା ଏକ ଲୌକିକ ପରିବେଶରେ ଏକାକାର ହୋଇଯାଇଛି । ସମଲାଇଙ୍କ ଅବତାରଣା ଯୋଗୁଁ ସମଲାଇ ଓ ଜାହ୍ନବୀଙ୍କର ପାରସ୍ପରିକ ଆଲିଙ୍ଗନରେ ହୃଦହାର ଛିଣ୍ଡି ତଳେ ପଡ଼ଯାଏ । ଦେବୀ ହାର ଖୋଜନ୍ତି ଖନିତ ବାଲୁକାରାଶି ସ୍ତୁପାକାର ହୋଇ ହୀରାକୁଦ ପାଲଟେ ।

"ଏବେ ହୀରାକୁଦ ନାମେ ଅଭିହିତ
ହୋଇଅଛି ସେହି ସ୍ଥାନ
କେତେ ହୀରା ତହୁଁ ପାଇତୋ କ୍ରମରେ
ହୋଇଛନ୍ତି ଧନବାନ ।

ସେହିପରି ଭୂମା ମହେଶ୍ୱରଙ୍କ କଥା ମଧ୍ୟ ସ୍ଥାନୀୟ ଚିତ୍ର ଭିତରେ ଉଲ୍ଲିଖିତ କରିଛନ୍ତି ।

କବିମାତ୍ରେ ସୌନ୍ଦର୍ଯ୍ୟପିପାସୁ । କବି ଚେତନାରେ ଛଅ ଋତୁ ହୁଅନ୍ତି ଫୁଲମାଳୀ । ଉତ୍କଳ ଲକ୍ଷ୍ମୀ ହୁଏ ଫୁଲ ସୁକୁମାରୀ, ଫୁଲର ଲଳନା । ପ୍ରାକୃତିକ ଶୋଭାକୁ ନେଇ କବିଙ୍କର ସୌନ୍ଦର୍ଯ୍ୟା-ନୁଭୂତି କାବ୍ୟରେ ସୁସ୍ପଷ୍ଟ—

"ଋତୁମାନେ ତୋର ଫୁଲମାଳି ରୂପେ
ଦେଉଥାନ୍ତି କେତେ ଫୁଲ
ଫୁଲବେଶୀ ଫୁଲ ଲଳସୀ କାହାକୁ
ଦେଖି ନାହିଁ ତୋହ ତୁଲ ।"

ଏହା ସହିତ ରବିନ୍ଦ୍ରନାଥଙ୍କ ଋତୁ ସଂହାର କବିତାର ଭବସାମ୍ୟ ଲକ୍ଷ୍ୟ କରଯାଇ ପାରେ । ଶୁଧୁ ତୋମାଦେର ପରେ ଛଅ ସେବାଦାସୀ / ଛଅ ଋତୁ ଫିରେ ଫିରେ ନୃତ୍ୟ କରେ ଆସି ପରି ଉକ୍ତିରେ ସାମଞ୍ଜସ୍ୟ ଲକ୍ଷିତ । ଏଥିରେ କବିଙ୍କର ପ୍ରକୃତ-ପ୍ରେମିକତାର ପରିଚୟ ସୁସ୍ପଷ୍ଟ ।

ସ୍ଥାନୀୟ ପରିବେଶର ବର୍ଣ୍ଣନା କ୍ରମେ ଏ କାବ୍ୟରେ ସମକାଳୀନ ଐତିହାସିକ ପୁରୁଷଙ୍କ ମହାନତାକୁ କବି ସ୍ମରଣ କରିଛନ୍ତି । ଇତିହାସ ସଂପର୍କରେ ଆଲୋଚନା କଲାବେଳେ ଥୋମାସ୍ କାରଲାଇଲ୍ କହିଛନ୍ତି— "Social life is the aggregate of all individual many lives who constitute society. History is the essenc of immemberable Biographies. ବ୍ୟକ୍ତିମାନଙ୍କର ଜୀବନ ସମଷ୍ଟିତ ସାମାଜିକ ଜୀବନ । ବ୍ୟକ୍ତି ହିଁ ସମଷ୍ଟିକୁ ଗଢ଼େ । କ୍ରମେ ତାହା ସମାଜର ଅଂଶ ପାଲଟି ଯାଏ । ଇତିହାସ ହେଉଛି ଅସୁମାରୀ ଜୀବନର ନିଷ୍କର୍ଷ । ଏଣୁ ଗଙ୍ଗାଧରଙ୍କ କାବ୍ୟମାନସରେ ସେହି ଶୃଙ୍ଖଳାଟି ଦିଶିଯାଏ ।

ମୟୂରଭଞ୍ଜ ମହାରାଜ ରାମଚନ୍ଦ୍ର ଦେବ କବି ଦୃଷ୍ଟିରେ ଦ୍ୱିଜରାଜ ଚନ୍ଦ୍ରଙ୍କର ଅବତାର । ରୋହିଣୀ ରାମଚନ୍ଦ୍ରଙ୍କ ଧର୍ମପତ୍ନୀ । ଦେବଗୁରୁ ବୃହସ୍ପତି ହୁଅନ୍ତି ସଦାଶୟ ସୁଭଳଦେବ ଓ ରାଧାନାଥଙ୍କୁ କବି ଶୁକ୍ରାଚାର୍ଯ୍ୟ ରୂପେ ପରିକଳ୍ପନା କରନ୍ତି । କବି ଇତିହାସ ଓ କିମ୍ବଦନ୍ତୀ ଆଧାରିତ ରାଜନ୍ୟ ବର୍ଗଙ୍କ ଯଶୋଗାନ କରୁ କରୁ ସ୍ଥାନିକତାର ପରିଚୟ ଦେବାକୁ ଯାଇ କହିଛନ୍ତି—

"ଘାଣ୍ଟି ହେଲା ମନ ନଦେଖି ତହିଁରେ
ରମାଇ ବଂଶର ଜଣେ
ବଳରାମ ଦେବ କମଳ କୁମାରୀ
ପଡ଼ିଲେ ସେକାଳେ ମନେ ।"

କବି ଦୃଷ୍ଟି ସ୍ଥାନୀୟ ଚିତ୍ରଣରେ ସୁଦୂର-ପ୍ରସାରୀ । ସ୍ଥାନୀୟ ନଦ ନଦୀ, ବଣ ପାହାଡ଼ ସହିତ ଓଡ଼ିଶାରେ ଭୂଗୋଳ କବି ଆତ୍ମାରେ ନାଚି ଉଠେ । ଜିରା, ଦନ୍ତା, ଝାଉଁ, ଭେଡେନ, ମାଳତୀ, ଅଣିକା, ଖରଖରୀ, ହରଡ ପରି ବହୁ ନଦୀର ଚିତ୍ର ଉପସ୍ଥାପନରେ ସ୍ଥାନୀୟ ରୂପ ପ୍ରତି-ଫଳିତ । ସମ୍ବଲପୁର ଜିଲ୍ଲାର ଥିବା ଶିଶୁପାଳ, ବାରପାହାଡ଼,ବୁଢାରଜା, ମୋତିଝରଣ, ବଣାଇଁରେ ଥିବା ମାଙ୍କଡନଚ୍ଚ, ଢେଲିଆଝୋଳା, ବାଦାମଗଡ ପ୍ରଭୃତି ପର୍ବତର ବର୍ଣ୍ଣନା ଗଂଙ୍ଗାଧରଙ୍କ କାବ୍ୟରେ ବର୍ଣ୍ଣିତ ।

କବି ଗଙ୍ଗାଧର ମେହେର ଥିଲେ ଓଡ଼ିଆ ଜାତିର କବି । ଓଡ଼ିଶା ଚେତନା ବା ପାନ ଓଡ଼ିଶା ଭବ ତାଙ୍କୁ ଆଚ୍ଛନ୍ନ କରି ରଖିଥିଲା । ତେଣୁ ସେ କହୁଥିଲେ—

"ମସ୍ତକେ ମୋର ଝୋପି ନଦେବ ବାବାରେ
ନ କାଢ଼ିବ ମୋ କରୁ କଙ୍କଣ
ସିନ୍ଦୂର ବିନ୍ଦୁ ମୋ ଭାଲେ ରଖିବାରେ
ନିରନ୍ତର ରଖିଥିବ ସୁରଣ ।"

ଏଥିରେ କବିଙ୍କ ଓଡ଼ିଶା ଚିନ୍ତାଧାରର ଆଲେଖ୍ୟ ସୂଚିତ । ଜଣେ ନିର୍ଭିକ ସ୍ୱାଧୀନଚେତା ମଣିଷ ଭବରେ ତାଙ୍କର କାବ୍ୟସ୍ୱର ଯେତିକି ଶାଣିତ ସେହିପରି ସୁଗୋଚିତ । ସମକାଳୀନ ନୃଶଂସ ଶାସକ ଗୋଷ୍ଠୀ, ପ୍ରଜାବର୍ଗଙ୍କ ପ୍ରତି ତାଙ୍କର ରୁକ୍ଷ ମନୋଭବ, କୂଟ କପଟତା ପୂର୍ଣ୍ଣ ଆଚରଣକୁ ନେଇ କବି ଲେଖିଛନ୍ତି—

"ଜୀବନ ଯା ଲକ୍ଷ ଲକ୍ଷ ଲୋକଙ୍କର ଭର
ତାଙ୍କୁ ମଧ୍ୟ ବୋଲିଥାନ୍ତି ଧର୍ମଅବତାର ।"

ଏତ ସ୍ୱଦେଶାନୁରାଗ ସମ୍ବଳିତ ଏକ ସାର୍ଥକ କବିତା ।

ଗଂଗାଧରଙ୍କ କୃଷକ ସଂଗୀତ ଗୁଡ଼କରୁ କବି ମଣିଷଟି ଧୂଳିମାଟିର ମଣିଷ ସଙ୍ଗେ କିପରି ଯୋଗାଯୋଗ ରକ୍ଷା କରେ ତା'ର ଚିତ୍ର ପ୍ରଦତ୍ତ ।

କୃଷି ତୋର ବେଦରେ କୃଷି ତୋ ପୁରାଣ
କୃଷି ବିନା ରହି ନ ପାରଇ ପରାଣ
କୃଷି ଘେନି ନୃପତି କୃଷି ଘେନି ସଭ୍ୟ
କୃଷିବଳେ ଆୟୁ ଶ୍ରୀ ସମ୍ପଦ ସକଳ
ହୁଏ ଲଭ୍ୟ ହେ ।"

"ଛାଡ଼ଦେଲେ କୃଷିକି ସବୁ ଯିବ ନାଶ
ନ ମିଳିବ ଗ୍ରାସ ଯେ ନ ମିଳିବ ବାସ
କାହିଁଯିବ ସଭ୍ୟତା ଭବ୍ୟତା ସକଳ
ଅନାହାରେ ମାନବ ମରିବ ହୋଇଣ କଲବଲ ହେ ।"

କୃଷକ ସଂଗୀତରେ ସ୍ଥାନିତ ବିଭିନ୍ନ କୃଷି-ଜାତ ଦ୍ରବ୍ୟର ଉତ୍ପାଦନ ପ୍ରଣାଳୀ ପରିପ୍ରେକ୍ଷୀରେ ଯେଉଁ ଶବ୍ଦସବୁ ପ୍ରୟୋଗ କରଯାଇଛି, ତାହା ପଶ୍ଚିମାଞ୍ଚଳର ପ୍ରଚଳିତ ଶବ୍ଦ ସମ୍ଭାର । ଯଥା— ଆଟ୍, ବାହାଲ୍, ବେର୍‌ନା, କପର୍, ଭୁଡୁରି, ଘୁଁଟି, ଦଉଁରା, ଝୁଡା; ଶିଳା, ବତରି, ଅଧା, କୁଶାରୀ, ହରବର, କରଡ଼, ଝାକି ଝାକି; ଠିଣ୍ଟିଣି ପ୍ରଭୃତି ଶବ୍ଦରୁ ସ୍ଥାନୀୟ ପ୍ରଚଳିତ ଭଷା ପ୍ରୀତିର ପରିଚୟ ମିଳେ । ଏ ସଂପର୍କରେ ମାନସିଂହ କହନ୍ତି— ଏ କବି ନବଯୁଗର କବି, ବିଜ୍ଞାନ ଯୁଗର କବି, ପ୍ରଗତିବାଦୀ କବି ମେହେର ପ୍ରତିଭର ଅନ୍ତର୍ଦୃଷ୍ଟି ଦେଖିପାରିଥିଲା ଯେ, କୃଷକ କୁଳର ଉନ୍ନତି ହିଁ ଭରତର ଓ ଜାତିର ଉନ୍ନତି । କୃଷକ କିନ୍ତୁ ମୂର୍ଖ ଓ ନିରକ୍ଷର । ତା ଚିତ୍ତରେ ବିଜ୍ଞାନ ଯୁଗର ନୂତନ ଜ୍ଞାନଗଡ଼ି କିପରି ପ୍ରବିଷ୍ଟ କରଯାଇ ପାରିବ, ନିରକ୍ଷର ଭରତୀୟ କୃଷକ ଜମିରେ ହଳ କଲା-ବେଳେ ଗୀତ ଗାଇଥାଏ । ଦିବ୍ୟଦ୍ରଷ୍ଟା ମେହେର

ସେଇ ମୂର୍ଖ ହଳିଆ ଗୀତ ଦେଇ ହିଁ ଭାରତୀୟ କୃଷକର ନବଜୀବନର ସନ୍ଧାନ ଦେଇଛନ୍ତି ।'' ଏଣୁ କବି ଗଙ୍ଗାଧରଙ୍କ ସ୍ଥାନୀୟ ରୂପରଂଗକୁ ଚିହ୍ନଟ କଲାବେଳେ ଏକ ବିଶ୍ୱଜନୀନତାର ଭାବ ଉପଲବ୍ଧି କରିହୁଏ । ଏହା ହିଁ ଗଙ୍ଗାଧରଙ୍କ କାବ୍ୟରେ ସ୍ଥାନିକତାର ଅନ୍ୟତମ ବିଶେଷତ୍ୱ ।

ଅଧ୍ୟାପିକା
ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର

●

# ଏକଶତ ବର୍ଷର ଓଡ଼ିଆ ମଞ୍ଚ ନାଟକ

ଡ଼କ୍ଟର ସଚ୍ଚିଦାନନ୍ଦ ମିଶ୍ର

ବିଶ୍ୱରେ ସର୍ବତ୍ର ନାଟକ ତାର ଜନ୍ମକାଳରୁ ମଞ୍ଚ ପାଇଁ ଉଦ୍ଦିଷ୍ଟ । ନାଟକର ରସଗତ ସଫଳତା ନିର୍ଭର କରେ ଦୃଶ୍ୟ ଉପରେ । ନାଟକର ଶ୍ରାବ୍ୟତ୍ୱ ଓ ପାଠ୍ୟତ୍ୱ ତା'ର ସଫଳତାର ଅନ୍ୟଦିଗ ହେଲେହେଁ ଦୃଶ୍ୟତ୍ୱକୁ ପ୍ରଥମ ମର୍ଯ୍ୟାଦା ଦିଆଯାଇ ଥାଏ । ଅବଶ୍ୟ ସ୍ୱୀକାର କରିବାକୁ ହେବଯେ, ମଞ୍ଚ ସାଫଲ୍ୟ ଉପରେ ନାଟ୍ୟ ମୂଲ୍ୟ ଅନେକଟା ନିର୍ଭର ଶୀଳ ହୋଇଥିଲେହେଁ ଏହା ନାଟକର ଉଚ୍ଚ ମୂଲ୍ୟ ନିର୍ଦ୍ଧାରକ ନୁହେଁ, ତେବେ ଅଭିନୟ କଳା ଓ ମଞ୍ଚ କଳାର ସାମଗ୍ରିକ ସହଯୋଗିତାରେ ନାଟକର ରସସୃଷ୍ଟି ଘନୀଭୂତ ହୁଏ । ମଞ୍ଚ ମାଧ୍ୟମରେ ନାଟ୍ୟକାର ଦର୍ଶକର ଅନୁଭୂତି ଓ ହୃଦୟର ନିକଟବର୍ତ୍ତୀହୁଏ । ଶିଳ୍ପଗତ ଦୁର୍ବଳତା ସତ୍ତ୍ୱେ ଗୋଟିଏ ନାଟକ ମଞ୍ଚ ସଫଳତା ଲାଭ କରିପାରେ । ନିପୁଣ ଅଭିନୟ ଓ ମଞ୍ଚକଳା କୌଶଳର ଅବଲମ୍ବନରେ ପରିବେଷିତ ନାଟକ ରସସୃଷ୍ଟିରେ ଦୁର୍ବଳ ହୋଇ ମଧ୍ୟ ଜନସମ୍ବର୍ଦ୍ଧନା ଲାଭ କରିପାରେ । ନାଟକରେ ପରିବେଷିତ ନାଟ୍ୟକାରଙ୍କ ବିଶିଷ୍ଟ ଭାବ ଓ ମହତ୍ ଉଦ୍ଦେଶ୍ୟ ଅନେକ ସମୟରେ ମଞ୍ଚକଳା କୌଶଳର ଅଭାବରେ ରସ ସୃଷ୍ଟିରେ ବ୍ୟର୍ଥ ହୋଇଥାଏ । ନାଟ୍ୟତତ୍ତ୍ୱ ଓ ଅଭିନୟତତ୍ତ୍ୱ ପରସ୍ପର ପରିପୂରକ ଥାଇ ନାଟ୍ୟକଳାର ସୃଜନାତ୍ମକ ଦିଗକୁ ଉଚ୍ଚଗୁଣ ମଣ୍ଡିତ କରିଥାନ୍ତି । ତେଣୁ ନାଟକ ଓ ତା'ର ଅଭିନୟ ଅନ୍ୟୋନ୍ୟାଶ୍ରିତ ।

ନାଟ୍ୟାଭିନୟ ପାଇଁ ଦୁଇ ଶ୍ରେଣୀର ମଞ୍ଚ ମୁଖ୍ୟତଃ ପରିଦୃଷ୍ଟ ହୁଏ । ଗୋଟିଏ ହେଲା ସ୍ୱାଭାବିକ ମଞ୍ଚ ଏବଂ ଅନ୍ୟଟି ହେଲା ବାସ୍ତବଧର୍ମୀ-ମଞ୍ଚ । ନାଟ୍ୟ ପରିଚାଳକ ଯେତେବେଳେ ସହଜ ଓ ପ୍ରତ୍ୟକ୍ଷ ଭାବରେ ନାଟ୍ୟ ପରିଚାଳକ ଯେତେବେଳେ ସହଜ ଓ ପ୍ରତ୍ୟକ୍ଷ ଭାବରେ ନାଟ୍ୟବସ୍ତୁକୁ ଦର୍ଶକଙ୍କ ସମ୍ମୁଖରେ ଉପସ୍ଥାପନ କରେ ସେତେବେଳେ ସେ ସ୍ୱାଭାବିକ ମଞ୍ଚକୁହିଁ ଗ୍ରହଣ କରିଥାନ୍ତି । ଗ୍ରୀକ୍ ରଙ୍ଗମଞ୍ଚ, ଭାରତୀୟ ଯାତ୍ରାଭିନୟ, ଜାପାନୀ କାବୁକି ଅଭିନୟ ଏବଂ ବର୍ତ୍ତମାନର ଏରିନା ଥିଏଟର ଆଦି ଏହି ଶ୍ରେଣୀୟ ମଞ୍ଚ । ଯେତେବେଳେ ପରିଚାଳକ ନାନାବିଧ ଶିଳ୍ପ କଳାର ଆଶ୍ରୟରେ ମଞ୍ଚମାୟା

ସୃଷ୍ଟି କରି ଦର୍ଶକର ସୌନ୍ଦର୍ଯ୍ୟ ଓ ରସବୋଧକୁ ପରିତୃପ୍ତି କରିବା ପାଇଁ ଚାହିଁଛନ୍ତି ସେତେବେଳେ ସେ ଆଙ୍ଗିକ କଳା କୌଶଳ ପୂର୍ଣ୍ଣ ବାସ୍ତବ ଧର୍ମୀ ମଞ୍ଚକୁହିଁ ଅବଲମ୍ବନ କରିଛନ୍ତି । ପ୍ରାଚୀନ ଭାରତୀୟ ରଙ୍ଗମଞ୍ଚ ଏବଂ ଆଧୁନିକ ପାଶ୍ଚାତ୍ୟ ଏକମୁଖୀ ରଙ୍ଗମଞ୍ଚ ତଥା କଳା-କୌଶଳ ପୂର୍ଣ୍ଣ ରଙ୍ଗମଞ୍ଚ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ହେବ । ରଙ୍ଗମଞ୍ଚର ଇତିହାସରେ ଯେଉଁସବୁ ରୂପବୈଚିତ୍ର୍ୟ ନାନା ରୂପରେ ଦେଖାଯାଏ ତନ୍ମଧ୍ୟରେ ଏଇ ଦୁଇ ମଞ୍ଚ-ରୀତିର ପାରସ୍ପରିକ ପ୍ରତିଯୋଗିତା ଓ ସମନ୍ୱୟ ସାଧନ ପ୍ରତୀୟମାନ ହୁଏ । ବାସ୍ତବ ଧର୍ମୀ ଛବିକାଛ ବିଶିଷ୍ଟ ମଞ୍ଚ ବିରୁଦ୍ଧରେ ବାସ୍ତବ ବିରୋଧୀ ନାନା ପ୍ରକାର ମଞ୍ଚ ଆନ୍ଦୋଳନ ବିଭିନ୍ନ ସମୟରେ ଦେଖାଯାଇଛି । ଗର୍ଡନ କ୍ରେଗ ବାସ୍ତବଧର୍ମୀ ମଞ୍ଚ ବିରୋଧରେ ସାଙ୍କେତିକ ମଞ୍ଚରୀତି ପ୍ରବର୍ତ୍ତନ କରିବା ପରେ କିଉବିକ ମତବାଦ, ନିର୍ମାଣବାଦୀ ଓ ପ୍ରକାଶବାଦୀ ମଞ୍ଚରୀତିର ଉଦ୍ଭବ ଘଟିଛି । ଯନ୍ତ୍ରଶିଳ୍ପ ପରିବହୁଲୋକ ସମନ୍ୱିତ ଅଭିନୟ ପାଇ ବାସ୍ତବବାଦୀ ମଞ୍ଚ ବିରୁଦ୍ଧରେ ପ୍ରକାଶବାଦ ମଞ୍ଚର ଅଭ୍ୟୁଦୟ ଘଟିଥିଲା । ସଂପ୍ରତିକ କାଳରେ ବାସ୍ତବ ଧର୍ମୀ ମଞ୍ଚମାୟା ବିରୁଦ୍ଧରେ ଆଉ ଦୁଇଟି ମଞ୍ଚରୀତି ମୁଣ୍ଡ ଟେକିଛି । ଗୋଟିଏ ହେଲା ଆବସର୍ଡ ମଞ୍ଚରୀତି; ଅନ୍ୟଟି ହେଲା ବ୍ରେଶଟୀୟ ମଞ୍ଚରୀତି, ଉଦ୍ଭଟ ମଞ୍ଚ ରୀତିରେ ସ୍ଥାନ ଓ କାଳର ସଙ୍ଗତି ଓ ପାରମ୍ପର୍ଯ୍ୟ ଏକବାରେ ଉପେକ୍ଷିତ । ଅଖଣ୍ଡ ଚିତ୍ର ଅପେକ୍ଷା ଖଣ୍ଡଚିତ୍ର ଫୁଟାଇବାରେ ଏବଂ ସୁଗଠିତ ନାଟ୍ୟରୀତି ତଥା ଐକ୍ୟ ବିରୋଧରେ ଅବିରାମ ସଂଘର୍ଷ ଫଳରେ ମଞ୍ଚର ରୂପ ଓ ରୀତିରେ ବହୁ ପରିବର୍ତ୍ତନ ଦେଖାଦେଲା । ବ୍ରେଖେଟ, ଆରିଷ୍ଟଟଲୀୟ ନାଟ୍ୟରୀତିର ପ୍ରତିବାଦ କରି ବିଚ୍ଛିନ୍ନତାବାଦ ଓ ମହାକାବ୍ୟିକ ନାଟ୍ୟରୀତିର ପ୍ରବର୍ତ୍ତନ କଲେ । ତାଙ୍କ ମତରେ ଦର୍ଶକ ନିଜ ଭାବାବେଗକୁ ଅଭିନେତା ସହିତ ଯୁକ୍ତ କରିବେ ନାହିଁ । ନାଟକର ଘଟଣା ଅଖଣ୍ଡ ବା ଐକ୍ୟ ଭାବରେ ନୁହେଁ ଖଣ୍ଡିତ ଭାବରେ ଦର୍ଶକର ଚିତ୍ତକୁ ଜାଗ୍ରତ କରିବ ଏବଂ ଅଭିନେତା ଓ ଦର୍ଶକ ବୁଦ୍ଧିକୁ ଉଦ୍ଦୀପ୍ତ କରିବ । ମଞ୍ଚର ଆଙ୍ଗିକ ତଥା ଶବ୍ଦ, ସଙ୍ଗୀତ, ଆଲୋକ ଆଦି ନାଟକରେ ବର୍ଣ୍ଣିତ ଘଟଣାର ଭାବ ଓ ଆବେଗକୁ ଖଣ୍ଡିତ କରିବ । ନାଟକ ମଧ୍ୟରେ ଅନବରତ ଭାଷ୍ୟ ଓ ମନ୍ତବ୍ୟ ଚାଲୁଥିବ, ବ୍ରେଖେଟଙ୍କ ନାଟ୍ୟାଭିନୟରେ ଗ୍ରୀକ୍ କୋରସ ରୀତି, ଅନୁକରଣ ମୂଳକ ଅଭିନୟ ରୀତି ଓ ଉଦ୍ଭଟ ନାଟ୍ୟରୀତିର ସମନ୍ୱୟ ରହିଛି । ସାଂପ୍ରତିକ କାଳରେ ମଞ୍ଚରେ ଯେତେ ପରିବର୍ତ୍ତନ ଘଟୁନା କାହିଁକି ନାଟକର ବକ୍ତବ୍ୟ ମଞ୍ଚସାର୍ଥକ ଭାବରେ ରୂପାୟିତ ହୋଇଛି କି ନାହିଁ, ତାହାହିଁ ବିଚାର୍ଯ୍ୟ । ମଞ୍ଚଯେତେ ବୈଚିତ୍ର୍ୟମୟୀ ଏବଂ ଶକ୍ତିଶାଳୀ ହେଉନା କାହିଁକି ତାହା ଉପାୟମାତ୍ର; ନାଟକର ଅସଲକଥା ହେଲା, ସେଥିରେ ରୂପାୟିତ ମାନବ ଜୀବନ, ଚଳମାନ ବାସ୍ତବଜୀବନ ଓ ମାନବର ସମସ୍ୟା ରୂପାୟନର ଅସଫଳତାରେ ନାଟକ ବ୍ୟର୍ଥ ହୋଇଥାଏ ଓଡ଼ିଆ ନାଟକର ଉନ୍ମେଷ କାଳରୁ ଆମ ନାଟ୍ୟକାରମାନେ ଅଳ୍ପବହୁତ ଯୁଗୀୟ ଆହ୍ୱାନର ସମ୍ମୁଖୀନ ହୋଇ ନାଟକର ଆଙ୍ଗିକ ଗଠନ, ଆତ୍ମିକ ଚେତନା ଏବଂ ମଞ୍ଚଗତ କୌଶଳର ପ୍ରତିଷ୍ଠା ଓ ପରିବର୍ତ୍ତନ ମଧ୍ୟରେ ମାନବର ଚଳମାନ ଜୀବନ ଓ ସମସ୍ୟାର ସଫଳ ରୂପାୟନ କରିଚାଲିଛନ୍ତି ।

ଊନବିଂଶ ଶତକର ଷଷ୍ଠ / ସପ୍ତମ ଦଶକ ବେଳକୁ ପାଶ୍ଚାତ୍ୟ ନାଟକର ପ୍ରଭାବରେ ଭାରତର ବିଭିନ୍ନ ଭାଷା ଭାଷୀ ଅଞ୍ଚଳରେ ଆଧୁନିକ ନାଟକ ଓ ରଙ୍ଗମଞ୍ଚର ସୂତ୍ରପାତ ହୋଇଛି । ଇଂରାଜୀ ପ୍ରଭାବିତ ଏହି ଆଧୁନିକ ନାଟକ ପ୍ରୋସେନିୟମ ବା ଏକମୁଖୀ ରଙ୍ଗମଞ୍ଚରେ ଅଭିନୀତ ହୋଇ ଆସୁଛି । ବହୁ ପୂର୍ବରୁ ଓଡ଼ିଶାରେ ପ୍ରଚଳିତ ରାମଲୀଳା, କୃଷ୍ଣ ଲୀଳା, ଦଣ୍ଡ, ଛଉ, ପାଟୁଆ ଆଦି ଲୋକ ନାଟ୍ୟ ମୁକ୍ତ ଆକାଶ ତଳେ ଗ୍ରାମ ଦାଣ୍ଡରେ ଅଭିନୀତ ହୋଇ

ହୋଇ ଆସୁଥିଲା । ଊନବିଂଶ ଶତକରୁ ପ୍ରବର୍ତ୍ତିତ ନବଯାତ୍ରା ମୁକ୍ତ ମଞ୍ଚରେ ପ୍ରଦର୍ଶିତ ହେଉଥିବାରୁ ତାହା କଳା କୌଶଳ ପୂର୍ଣ୍ଣ ଆଧୁନିକ ନାଟକ ଭବରେ ବିଚାର କରଯାଉ ନାହିଁ । ବୈଷ୍ଣବ ପାଣି, ଜଗନ୍ନାଥ ପାଣି, ମୋହନ ଗୋସ୍ୱାମୀ, ଗୋବିନ୍ଦ ଶୂରଦେଓ ଓ ବାଳକୃଷ୍ଣ ମହାନ୍ତି, ପ୍ରଭୃତି ପ୍ରଖ୍ୟାତ ଯାତ୍ରାଲେଖକ ଓ ପରିଚାଳକ ବୃନ୍ଦ ଏହି ନବ ଯାତ୍ରାକୁ ଓଡ଼ିଶାରେ ସର୍ବତ୍ର ଅଭିନୟ କରଇ ବିଶେଷ ଜନପ୍ରିୟ କରଇ ଥିଲେ ହେଁ ଆଧୁନିକ ଶିକ୍ଷିତ ବୁଦ୍ଧିଜୀବୀ ଗୋଷ୍ଠୀର ଆଦରଣୀୟ ହୋଇପାରି ନାହିଁ । ଓଡ଼ିଶାର ଆଧୁନିକ ନାଟକ କହିଲେ ବାସ୍ତବ ଧର୍ମୀ ଏକ ମୁଖୀ ରଙ୍ଗ-ମଞ୍ଚରେ ଅଭିନୀତ ନାଟକକୁ ହିଁ ବୁଝାଇ ଥାଏ ।

ଅଷ୍ଟାଦଶ ଶତାବ୍ଦୀର ଶେଷଭଗରୁ କଲିକତାରେ ଇଂରେଜ ମାନଙ୍କ ଦ୍ୱାର ପ୍ରତିଷ୍ଠିତ ଓ ପରିଚାଳିତ ଏକ ମୁଖୀ ରଙ୍ଗ ମଞ୍ଚରେ ଇଂରାଜୀ ନାଟକର ନିୟମିତ ଅଭିନୟ ହୋଇ ଆସୁଛି । ଏହି ସବୁ ମଞ୍ଚର ପ୍ରଭବରେ ବଙ୍ଗଳାରେ ନବଚେତନା ଧର୍ମୀ ନାଟକ ଓ ମଞ୍ଚର ସୃଷ୍ଟି, ଓଡ଼ିଶାରେ ଏହି ବଙ୍ଗଳା ନାଟକର ସାମୟିକ ଅଭିନୟ ଏବଂ କଟକ କାଥୋଲିକ ସ୍କୁଲ ଛାତ୍ର-ଛାତ୍ରୀଙ୍କ ଦ୍ୱାର ବାର୍ଷିକ ନାଟ୍ୟୋତ୍ସବ ଅବସରରେ ସାଜସଜ୍ଜା ବହୁଳ ଏକ-ମୁଖି ରଙ୍ଗମଞ୍ଚରେ ଇଂରଜୀ ନାଟକର ନିଖୁଣ ଅଭିନୟ ଓଡ଼ିଶାର ଶିକ୍ଷିତ ଯୁବଗୋଷ୍ଠୀଙ୍କ ମନରେ ନୂତନ ନାଟକ ସୃଷ୍ଟିର ଉନ୍ମାଦନା ସୃଷ୍ଟି କରିଥିଲା । ଫଳରେ ୧୮୮୦ ମସିହାର ଲିଖିତ ଏବଂ ୧୮୮୧ ଫେବୃଆରୀ ତା ୭ ରିଖରେ କଟକ ମାଣିକ ବଜାରରେ ଗୋପାଳ ପ୍ରସାଦ ମିତ୍ରଙ୍କ ଗୃହ ପ୍ରାଙ୍ଗଣରେ ଅସ୍ଥାୟୀ ଏକମୁଖୀ ମଞ୍ଚରେ ଅଭିନୀତ ହୋଇଥିବା ରମଶଙ୍କର ରାୟଙ୍କ 'କାଞ୍ଚିକାବେରୀ' ହିଁ ପ୍ରଥମ କଳାତ୍ମକ ନାଟକ ଭବରେ ସମ୍ମାନିତ । ୧୮୭୭ ମସିହାରେ ଜଗନ୍ମୋହନ ଲାଲଙ୍କ ସମାଜ ସଂସ୍କାର ଧର୍ମୀ ବାବାଜୀ ନାଟକ ରଚନା କରି ଓଡ଼ିଆ ନାଟକର ଆଦ୍ୟ ଉନ୍ମେଷ ଘଟାଇ ଥିଲେ ହେଁ ଏହାର ଅଭିନୟ ଉପଯୋଗିତା ନଥିବା ହେତୁ ଜନମାନସକୁ ଉଦ୍‌ବୁଦ୍ଧ କରିପାରିନାହିଁ ଅନ୍ୟ ପକ୍ଷରେ 'କାଞ୍ଚିକାବେରୀ' ଏକ କଳାତ୍ମକ କାଳଜୟୀ ସୃଷ୍ଟି-ଭବରେ ଗଣ୍ୟ ହୋଇ ୧୯୨୦ ପର୍ଯ୍ୟନ୍ତ ଓଡ଼ିଆ ନାଟ୍ୟ ସାହିତ୍ୟକୁ ପ୍ରଭବିତ କରିଆସିଛି । ରମଶଙ୍କରଙ୍କ ଅନ୍ୟାନ୍ୟ ନାଟ୍ୟକୃତି 'କାଞ୍ଚିକାବେରୀ' ତୁଲ୍ୟ ଉଚ୍ଚ-ମାନର ହୋଇନଥିଲେ ହେଁ ୧୯୦୮ / ୧୯୦୯ ବେଳକୁ ପ୍ରତିଷ୍ଠିତ କଟକର 'ଭାରତୀ ପେଣ୍ଡାଲ୍' ଏବଂ ସମସାମୟିକ ବହୁ ସୌଖୀନ ମଞ୍ଚରେ ଅଭିନୀତ ହୋଇଛି । କୋଠପଦା ମଠମହନ୍ତ ଦୈତାରୀ ରଘୁନାଥ ପୁରୀଙ୍କ ଅନୁରୋଧରେ ରମଶଙ୍କର ତାଙ୍କ ରମବନବାସ; କଂସବଧ, ରମା-ଭିଷେକ, ବନମାଳା, କଳିକାଳ, ବୃନ୍ଦାବନ, ଚୈତନ୍ୟ ଲୀଳା ଆଦି ରଚନା କରିଥିଲେ । କାଞ୍ଚିକାବେରୀ ସମେତ ତାଙ୍କ ସମସ୍ତ ନାଟକ କୋଠପଦାର ଏକ-ମୁଖୀ ସ୍ଥାୟୀ ରଙ୍ଗମଞ୍ଚରେ ୧୮୫୪ ମସିହାଠାରୁ କେତେବର୍ଷ ପର୍ଯ୍ୟନ୍ତ ବହୁବାର ଅଭିନୀତ ହୋଇଛି । ଏହି ସମୟରେ ଜଗନ୍ମୋହନ ଲାଲଙ୍କ ନିଜ ଗ୍ରାମ ମାହାଙ୍ଗାର 'ରଧାକାନ୍ତ' ରଙ୍ଗମଞ୍ଚର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଜଗନ୍ମୋହନଙ୍କ ନିଜଲିଖିତ ବାବାଜୀ, ସତୀ, ପ୍ରୀତି ଆଦି ନାଟକ ତାଙ୍କ ନିର୍ଦ୍ଦେଶନାରେ ସେଠାରେ ଅଭିନୀତ ହୋଇଥିଲା । ନାଟ୍ୟକାର ଲାଲ ସମସ୍ତ ନାଟକର ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ । ରମଶଙ୍କରଙ୍କ ପ୍ରଭବରେ କାମପାଳ ମିଶ୍ର ସୀତାବିବାହ, ହରିଶ୍ଚନ୍ଦ୍ର, ବସନ୍ତଲତିକା ଆଦି ନାଟକ ଏବଂ ଭିକାରୀ ଚରଣ ପଟ୍ଟନାୟକ କଟକ ବିଜୟ, ସଂସାରଚିତ୍ର, ରଜା ପୁରୁଷୋତ୍ତମ ଦେବ, ରତ୍ନମାଳୀ, ନନ୍ଦକେଶ୍ୱରୀ, ସୁଶୀଳା, ଯୌତୁକ ଆଦି ଐତିହାସିକ, ସାମାଜିକ ନାଟକ ରଚନା କରି ତତ୍‌କାଳୀନ ରଙ୍ଗମଞ୍ଚ ମାନଙ୍କରେ ଅଭିନୟ କରଇ ଯଶସ୍ୱୀ ହୋଇଥିଲେ । ଏହି ନୂତନ ନାଟ୍ୟ ପ୍ରେରଣା ଲାଭ କରି ଓଡ଼ିଶାର ବହୁ ଗଡଜାତର ରଜା-ଜମିଦାରମାନେ ନିଜ ନିଜ ନଅରରେ ମଞ୍ଚଶାଳାମାନ ପ୍ରତିଷ୍ଠା କଲେ । ପାରଳାର 'ରସିକ ରଜ ନାଟ୍ୟସଂସ୍ଥା'

ବା 'ପଦ୍ମନାଭ ରଙ୍ଗାଳୟ' ଏବଂ ଚିକିଟି ଗଡ଼ର ରାଧାମୋହନ ରାଜେନ୍ଦ୍ର ଦେବଙ୍କ ରଙ୍ଗାଳୟ ଏବଂ ଖଡ଼ିଆଳର 'ବିକ୍ରମଦେବ ରଙ୍ଗାଳୟ' ଓଡ଼ିଶା ରଙ୍ଗ ମଞ୍ଚକୁ ସମୃଦ୍ଧ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି । ପଦ୍ମନାଭ, ନାରାୟଣ ଦେବ, ରାଧା-ମୋହନ ରାଜେନ୍ଦ୍ର ଦେବ ଏବଂ ବୀର ବିକ୍ରମ ଦେବ ବହୁ ପୌରାଣିକ, ଐତିହାସିକ ଓ ସାମାଜିକ ନାଟକ ରଚନା କରି ଓଡ଼ିଆ ଭାଷାର ନାଟ୍ୟ ଦାରିଦ୍ର୍ୟ ଦୂର କରିଛନ୍ତି । ଏମାନଙ୍କ ସୃଷ୍ଟିର କଳାତ୍ମକ ମୂଲ୍ୟ ଯାହା ଥାଉନା କାହିଁକି ନିଜ ନିଜ ମଞ୍ଚରେ ଏହାକୁ ଅଭିନୟ କରାଇ ଲୀଳା ସୁଆଙ୍ଗ ପ୍ରେମୀ ଦର୍ଶକଙ୍କ ମନକୁ ମଞ୍ଚାଭିନୟ ପ୍ରତି ଆକୃଷ୍ଟ କରାଇବା ଥିଲା ମୁଖ୍ୟ ଉଦ୍ଦେଶ୍ୟ । ତେବେ ଦୁର୍ବଳ ପରାଧୀନ ଜାତୀର ପ୍ରାଣରେ ଜାତୀୟତାର ଭାବ ସୃଷ୍ଟି କରିବା ଅତୀତର ଗୌରବାବହ ଇତିହାସ ପ୍ରତି ଦୃଷ୍ଟି ଆକର୍ଷଣ କରିବା, ଧର୍ମଭାବ ଜାଗ୍ରତ କରାଇବା ଏବଂ ସତ୍ୟ-ନ୍ୟାୟ-ଦୟା-କ୍ଷମା ଆଦି ମାନବିକ ସଦ୍‌ଗୁଣାବଳୀର ବିକାଶ ଘଟାଇବା ଓ ସମାଜ ସଂସ୍କାରର ଆଦର୍ଶ ସୃଷ୍ଟି ପାଇଁ ଏଗୁଡ଼ିକ ପ୍ରେରଣା ଯୋଗାଉଥିଲା । ରାମଶଙ୍କର ପ୍ରବର୍ତ୍ତିତ ସମନ୍ୱୟାତ୍ମକ ଶୈଳୀ ଏହି ଚାଳିଶ ବର୍ଷ ଓଡ଼ିଆ ନାଟ୍ୟ ସୃଷ୍ଟିର ଆଦର୍ଶ ଥିଲା । ଏହି ସମୟ ନାଟକରେ କଳା-ସୌନ୍ଦର୍ଯ୍ୟ ବୋଧର ଅଭାବ, ଘଟଣା ଏବଂ ଗଠନ ପରିପାଟୀ ଚମତ୍କାର-ବିହୀନ ଥିଲେ ହେଁ ସମସାମୟିକ ସମାଜ ଜୀବନ ଓ ସମସ୍ୟା ରୂପାୟନରେ ନିଶ୍ଚେଷ୍ଟ ନଥିଲା ।

ପ୍ରଥମ ମହାଯୁଦ୍ଧ ପରବର୍ତ୍ତୀ କାଳରେ ଓଡ଼ିଆ ନାଟକ ଓ ମଞ୍ଚକଳାର ବିକାଶରେ ନାଟ୍ୟ ସମ୍ରାଟ ଅଶ୍ୱିନୀକୁମାର ଘୋଷଙ୍କ ଅବଦାନ ଅବିସ୍ମରଣୀୟ । ଓଡ଼ିଶାର ପ୍ରଥମ ଭ୍ରାମ୍ୟମାଣ ବ୍ୟବସାୟିକ ମଞ୍ଚ ରାଧାକୃଷ୍ଣ ଥିଏଟରସ'ର ନାଟ୍ୟରସିକ ସତ୍ତ୍ୱାଧିକାରୀ ବନମାଳୀ ପତିଙ୍କ ପ୍ରେରଣାରେ ଅଶ୍ୱିନୀ କୁମାର ତାଙ୍କ ମଞ୍ଚ ପାଇଁ ନିୟମିତ ନାଟକ ରଚନା କରିଥିଲେ । ୧୯୨୭ ରେ ବନମାଳୀ ପତିଙ୍କ ମୃତ୍ୟୁ ପରେ ଅଶ୍ୱିନୀ କୁମାର ୧୯୩୬ ପର୍ଯ୍ୟନ୍ତ ଏହି ମଞ୍ଚକୁ ନିଜ ପରିଚାଳନାରେ ବଞ୍ଚାଇ ରଖିଥିଲେ । ତାଙ୍କ ରଚିତ ସେଓତୀ, କଳାପାହାଡ଼, ଭୀଷ୍ମ, ସାବିତ୍ରୀ, ଗୋବିନ୍ଦ ବିଦ୍ୟାଧର, କୋଣାର୍କ ଆଦି ନାଟକ ଏହି ରଙ୍ଗମଞ୍ଚରେ ପରିବେଷିତ ହୋଇଛି । **୧୯୧୫** ରୁ ୧୯୪୦ ପର୍ଯ୍ୟନ୍ତ ଅଶ୍ୱିନୀ କୁମାର ଓଡ଼ିଆ ନାଟ୍ୟ ସାହିତ୍ୟ କ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ ନାଟ୍ୟକାର ଭାବରେ ଆଶା-ଆଶ୍ୱାସନାର ସ୍ଥଳୀଥିଲେ । ବହୁ ସୌଖୀନ ଓ ବ୍ୟବସାୟିକ ମଞ୍ଚ ତାଙ୍କ ନାଟକ ଗୁଡ଼କୁ ଅଭିନୟ କରାଇ ନାଟ୍ୟକାରଙ୍କୁ ଯଶସ୍ୱୀ କରାଇଛନ୍ତି । ତାଙ୍କ ନାଟକ ଗୁଡ଼କ ପେଷାଦାରୀ ରଙ୍ଗମଞ୍ଚ ପାଇଁ ଉଦ୍ଦିଷ୍ଟ ଥିବାହେତୁ ଦର୍ଶକର ରୁଚି ଉପରେ ସେ କିଛିଟା ଗୁରୁତ୍ୱ ଦେବାକୁ ବାଧ୍ୟହେଉ ଥିଲେ । ଅପ୍ରତ୍ୟାଶିତ ଘଟଣାର ସମାବେଶ, ନାଟ-କୀୟ ମୁହୂର୍ତ୍ତ ଏବଂ ପରିବେଶ ଉପରେ ସେ ଧ୍ୟାନ ଦେଉଥିଲେ । ତତ୍‌କାଳୀନ ସମୟରେ ବମ୍ବେର ବ୍ୟବସାୟୀ ରଙ୍ଗମଞ୍ଚ 'ପର୍ଶିଆନଥିଏଟର' ଏବଂ ପୁନାର 'ସାଙ୍ଗଲୀ ଥିଏଟର' କଟକ ଓ ଓଡ଼ିଶାର ଗଡ଼ଜାତ ମାନଙ୍କରେ ବୁଲି ଅଭିନୟ ପ୍ରଦର୍ଶନ କରଉଥିଲେ । ସେମାନଙ୍କ ଅପୂର୍ବ ମଞ୍ଚସଜ୍ଜା ଏବଂ ଆଶ୍ଚର୍ଯ୍ୟ ଧରଣର ମଞ୍ଚମାୟା ସୃଷ୍ଟିରେ ପ୍ରଭାବିତ ହୋଇ ଅଶ୍ୱିନୀ କୁମାର ନିଜ ନାଟକ ଓ ମଞ୍ଚରେ ତାର ପ୍ରୟୋଗ କରିଥିଲେ । ଅଭିନୟ କଳା ଓ ନାଟ୍ୟରୀତିର ସମନ୍ୱୟ ସାଧନ; ଗଦ୍ୟସଂଳାପକୁ ନାଟକୀୟ ଅଭିବ୍ୟକ୍ତି ଦେବାର ଦକ୍ଷତା, ଅମିତ୍ରାକ୍ଷର ସଂଳାପର ସୁକୌଶଳ ପ୍ରୟୋଗ, କଥାବସ୍ତୁ ପରି-କଳ୍ପନାରେ ସ୍ୱାତନ୍ତ୍ର୍ୟ, ଉତ୍କଣ୍ଠାସୃଷ୍ଟିରେ ତୀବ୍ରତା, ଦର୍ଶକର ରୋମାଣ୍ଟିକ ରସତୃଷ୍ଣା ଚରିତାର୍ଥର ସାମର୍ଥ୍ୟ ଆଦର୍ଶ ଭିତ୍ତିକ ସମାଜ ଗଠନର ସ୍ୱପ୍ନ, ଭାରତୀୟ ପରମ୍ପରାର ଉଚ୍ଚ ଆଦର୍ଶବୋଧ, ଉତ୍କଳର ସାଂସ୍କୃତିକ ଐତିହ୍ୟ ପ୍ରତିଷ୍ଠା, ଜାତୀୟତା ଓ ସଂସ୍କାର ପ୍ରୟାସ ଦୃଷ୍ଟିଭଙ୍ଗୀ ଏବଂ ଶୃଙ୍ଗାର-ବୀର ଆଦି ରସକୁ ସୌନ୍ଦର୍ଯ୍ୟ ଦର୍ଶନରେ ପ୍ରତିପାଦନ କରିବାର ଦକ୍ଷତା

ତାଙ୍କ ନାଟକର ଗୌରବ ପ୍ରତିଷ୍ଠାରେ ସହାୟକ ହୋଇଛି । ରାଧାକୃଷ୍ଣ ଥିଏଟରସ୍ କେବଳ ଅଶ୍ୱିନୀ କୁମାରଙ୍କ ପରି ନାଟ୍ୟ ପ୍ରତିଭାକୁ ଜନ୍ମ ଦେଇଛି ନୁହେଁ ବାଉରୀ ବଂଧୁ ମହାନ୍ତି, ରମଚନ୍ଦ୍ର ମାଣିଆଙ୍କ ପରି ବିଶିଷ୍ଟ ଅଭିନେତା ଏବଂ ଜ୍ୟୋତିନ୍ଦ୍ରନାଥ ମୁଖାର୍ଜୀ ଓ ଫନୀ ବାବୁଙ୍କ ପରି ସଙ୍ଗୀତଜ୍ଞଙ୍କୁ ମଧ୍ୟ ଏହି ମଞ୍ଚ ସୃଷ୍ଟି କରିଛି ।

ନାଟ୍ୟଭାରତୀ ଅଶ୍ୱିନୀ କୁମାରଙ୍କ ସମ-ସାମୟିକ ନାଟ୍ୟକାର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଓଡ଼ିଆ ନାଟକ ରଚନା ଓ ଅଭିନୟ କ୍ଷେତ୍ରରେ ଅବତୀର୍ଣ୍ଣ ହେବାଫଳରେ ମଞ୍ଚକଳାର ବିକାଶରେ ଅମ୍ଳ ପ୍ରତ୍ୟୟର ଭବ ସୁଦୃଢ ହୋଇ ପାରିଲା । ଏ କ୍ଷେତ୍ରରେ କାଳୀଚରଣଙ୍କ ଐକାନ୍ତିକ ନିଷ୍ଠା ଓ ସାଧନା ଓଡ଼ିଆ ନାଟକ ଓ ରଙ୍ଗମଞ୍ଚରେ ନୂତନ ଜୀବନ ସଞ୍ଚାର କଲା । ସେ ରାସପରିକଳ୍ପନା ଛାଡ଼ି ଓଡ଼ିଆ ନାଟ୍ୟ ଦାରିଦ୍ର୍ୟ ଦୂରକରିବାକୁ ଆଗେଇ ଆସିଲେ । ତାଙ୍କ ରାସ ପାର୍ଟି 'ଓଡ଼ିଶା ଥିଏଟରସ୍' ରେ ପରିଣତ ହେଲା । ଅଶ୍ୱିନୀ କୁମାରଙ୍କ ପ୍ରତିଷ୍ଠାଲାଭ ତାଙ୍କୁ ପ୍ରଲୋଭିତ କଲା । ଏହି ସମୟର ଦର୍ଶକ ବୃନ୍ଦ ପୌରାଣିକ-ଐତିହାସିକ କାହାଣୀ ଶୁଣି ଏବଂ କୃତ୍ରିମ ସମାଜର ଚିତ୍ରଦେଖି ନାଟକ ପ୍ରତି ବିତଃସ୍ପୃହ ହୋଇ ପଡିଥିଲେ । କାଳିଚରଣ ସେମାନଙ୍କୁ ବାସ୍ତବ ସମାଜର ସମସ୍ୟା ସମ୍ବନ୍ଧରେ ଅବଗତ କରାଇଲେ । ଫଳରେ ଅଶ୍ୱିନୀ କୁମାରଙ୍କ ନାଟ୍ୟ ପ୍ରତିଭାରେ ବିକଶିତ ପୌରାଣିକ-ଐତିହାସିକ ଯୁଗର ଅବସାନ ଘଟି ସାମାଜିକ ଯୁଗ ଅଭ୍ୟୁଦୟ ଘଟିଲା । ଚଳମାନ ସାମାଜିକ ସମସ୍ୟା ଦର୍ଶକ ପ୍ରାଣରେ ଚାଞ୍ଚଲ୍ୟ ସୃଷ୍ଟି କଲା । କାଳୀଚରଣଙ୍କ ନାଟକରେ ସାମାଜିକ ସମସ୍ୟା ଧର୍ମୀ କଥାବସ୍ତୁ, ସାମାଜିକ ଜୀବନ ବୈଚିତ୍ର, ଶ୍ରେଣୀ ବୈଷମ୍ୟ, ଗାନ୍ଧୀବାଦ, ଯାନ୍ତ୍ରିକ ସଭ୍ୟତାର କରାଳ ଗ୍ରାସରେ ପାରଂପାରିକ ସମାଜ ଜୀବନର ବିକୃତି, ମିଲମାଲିକ-ଶ୍ରମିକ ସଂଘର୍ଷ, ଟାଉଟରୀ ବ୍ୟଭିଚାରର ଚିତ୍ର; ପ୍ରେମ ପ୍ରଣୟରେ ପ୍ରତାରଣା ଆଦି ସ୍ଥାନ ପାଇଲା । କାଳୀଚରଣ ମଞ୍ଚରେ ସଂସ୍କାର ଆଣି ୩/୪ ଘଣ୍ଟାର ସୀମିତ ସମୟ ମଧ୍ୟରେ ଅଭିନୀତ ହୋଇ ପାରୁଥିବା କଥାବସ୍ତୁର ସଂଯୋଜନା କଲେ । ନାଟକକୁ ପ୍ରଭାବଶାଳୀ କରିବାପାଇଁ ସ୍ୱଗତୋକ୍ତି, ଜନାନ୍ତିକେକୁ ବାଦ ଦେଲେ । ସ୍ୱାଦ ପରିବର୍ତ୍ତନ ପାଇଁ ଆଞ୍ଚଳିକ ଭାଷାର ପ୍ରୟୋଗ କଲେ । ଜୀବନଧର୍ମୀ ଅନୁଭୂତିର ସଂକ୍ଷିପ୍ତ ଘାତ୍ରୋପଯୋଗୀ ସଂଳାପ ପ୍ରୟୋଗ କଲେ । ନାଟକର ଗୀତର ବହୁଳତା କମାଇ ସ୍ଥଳ ବିଶେଷରେ ପଲ୍ଲୀଶ୍ରୀରର ରାଗ ରାଗିଣୀ ଦେଲେ । ପ୍ରଥମେ କଉନ୍‌ସର୍ଟର ପ୍ରଚଳନ କରାଇ ଐକ୍ୟତାନିକ ବାଦ୍ୟର ବିରକ୍ତିକର ପରିବେଶରୁ ଦର୍ଶକକୁ ମୁକ୍ତିଦେଲେ । ଅବିରାମ ଗତିରେ ନାଟକ କ୍ରିୟାଶୀଳ ହୋଇପାରିଲା । ମଞ୍ଚ ସହଜ ସରଳ ହେଲା । ପ୍ରଥମେ ସେ ନାରୀମାନଙ୍କର ମଞ୍ଚାବତରଣ ଘଟାଇଲେ । ନାଟକ ଆଦର୍ଶ ଭାବ - ପ୍ରବଣତାରୁ ମୁକ୍ତିପାଇ ମନୋରଞ୍ଜନ ଧର୍ମ ହେଲା । 'ଓଡ଼ିଶା ଥିଏଟରସ୍' କାଳୀଚରଣଙ୍କ ନାଟ୍ୟ ପ୍ରତିଭାକୁ ବହୁଗୁଣରେ ବିକଶିତ କରିବା ସଙ୍ଗେ ସଙ୍ଗେ ସାମୁଏଲ ସାହୁ, ପ୍ରିୟନାଥ ମିଶ୍ର, ଦୁର୍ଲଭସିଂ ଦୀନବନ୍ଧୁ ଦାସ, କୃଷ୍ଣଚନ୍ଦ୍ର ପାଣ୍ଡେ, ସୁମତୀ ଦେବୀ ଲକ୍ଷ୍ମୀ, ମେନା ଆଦି ପ୍ରତିଷ୍ଠିତ କଳାକାର ମାନଙ୍କୁ ସୃଷ୍ଟି କରିଛି ।' ଓଡ଼ିଶା ଥିଏଟରସ୍' 'ଗାର୍ଲସ୍କୁଲ୍' ନାଟକ ଅଭିନୟପରେ ଯେଉଁ ନୂତନ ନାଟ୍ୟ ପରଂପରାର ସୂତ୍ରପାତ ହେଲା ତାହା ୧୯୪୦ ପର୍ଯ୍ୟନ୍ତ ଓଡ଼ିଆ ନାଟ୍ୟ ସାହିତ୍ୟକୁ ଆଚ୍ଛନ୍ନ କରି ରଖିଥିଲା ।

କାଳୀଚରଣଙ୍କ ନାଟ୍ୟାଦର୍ଶ ତଥା ମଞ୍ଚକଳାକୁ ଯେଉଁମାନେ ଅଧିକ ବୈଚିତ୍ର୍ୟମୟୀ କରାଇଛନ୍ତି ସେମାନଙ୍କ ମଧ୍ୟରେ ଭଂଜକିଶୋର ପଟ୍ଟନାୟକ, ରମଚନ୍ଦ୍ର ମିଶ୍ର, ଗୋପାଳ ଛୋଟରାୟ, ବ୍ୟୋମକେଶ ତ୍ରିପାଠୀ ଓ କମଳ ଲୋଚନ ମହାନ୍ତିଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । ଶ୍ରେଣୀ ବୈଷମ୍ୟ, ଦାରିଦ୍ର୍ୟ ଶୋଷଣ, ବେକାରୀ, ଦୁର୍ନୀତି, ରାଜନୈତିକଶଠତା ସାଂପ୍ରଦାୟିକ ସମସ୍ୟା ଆଦି ଏମାନଙ୍କ ନାଟକରେ

ରୂପାୟିତ । ଏମାନଙ୍କ ସମସ୍ୟା ଧର୍ମୀ ନାଟକ ଗୁଡ଼ିକର ଆଙ୍ଗିକ ଗଠନ ପରିପାଟୀ ସଂକ୍ଷିପ୍ତ ସୁଗଠିତ ଏବଂ ଏକମୁଖୀ । ନାଟକର ଘଟଣା ପ୍ରଭାବଶାଳୀ, ସଂଳାପ ତୀକ୍ଷଣ, ବ୍ୟଙ୍ଗାତ୍ମକ ଓ ବୈଦ୍ଧିକତାରେ ପୂର୍ଣ୍ଣ; ସଙ୍ଗୀତ ସ୍ୱଳ୍ପ, 'ହାସ୍ୟରସ ସୀମିତ' ଅନାବଶ୍ୟକ ଚରିତ୍ରର ଅଭାବ ପରିଦୃଷ୍ଟ ହୁଏ । ୧୯୩୪ ପୂର୍ବବର୍ତ୍ତୀ ନାଟ୍ୟକାର ମାନେ ସେକ୍‌ସ୍‌ପିଅରଙ୍କ ରୋମାଣ୍ଟିକ ଶୈଳୀଦ୍ୱାରା ପରିଚାଳିତ ହୋଇଥିବା ସ୍ଥଳେ ପରବର୍ତ୍ତୀମାନେ ଇବ୍‌ସେନଙ୍କ ବାସ୍ତବବାଦୀ ଶୈଳୀଦ୍ୱାରା ପ୍ରଭାବିତ । ଏହି ପ୍ରଭାବଶାଳୀ ନାଟ୍ୟକାର ମାନଙ୍କର ନାଟ୍ୟକୃତି ପ୍ରଖ୍ୟାତ ବ୍ୟାବସାୟିକ ରଂଗମଞ୍ଚ ଅନ୍ନପୂର୍ଣ୍ଣା 'ଏ' ଏବଂ 'ବି' ଗ୍ରୁପ୍, ରୂପଶ୍ରୀ, ଜନତା, କଳାଶ୍ରୀ ଆଦି ମଞ୍ଚ ଏବଂ ସହରଠାରୁ ମଫସଲ ପର୍ଯ୍ୟନ୍ତ ସ୍କୁଲ୍, ଅଫିସ, କଲେଜ, ଏବଂ ସାଂସ୍କୃତିକ ଅନୁଷ୍ଠାନର ସାମୟିକ ସୌଖୀନ ମଞ୍ଚରେ ଅଭିନୀତ ହୋଇ ମଞ୍ଚକଳାର ଅଭିବୃଦ୍ଧି ଘଟାଇଛି । ଏମାନଙ୍କ ସମୟ ଓଡ଼ିଆ ନାଟ୍ୟ ସାହିତ୍ୟର ସୁବର୍ଣ୍ଣ ଯୁଗ ।

୧୯୫୦ରେ ମନୋରଞ୍ଜନ ଦାସଙ୍କ 'ଆଗାମୀ' ନାଟକ ରଚିତ-ଅଭିନୀତ ହେବାପରେ ଓଡ଼ିଶା ନବନାଟ୍ୟ ଆନ୍ଦୋଳନର ଶୁଭାରମ୍ଭ ହୋଇଛି । ନୂଆ ଅମଡାବାଟରେ ଚାଲିବାପାଇଁ ନାଟ୍ୟକାର ମନୋରଞ୍ଜନ ତରୁଣ ସ୍ରଷ୍ଟାମାନଙ୍କୁ ପ୍ରଥମଥର ପାଇଁ ଆହ୍ୱାନ ଜଣାଇଛନ୍ତି । ଏହି ନୂତନ ପରୀକ୍ଷା ଧର୍ମୀ ନାଟକ କଟକର 'ୟୁନାଇଟେଡ ଆର୍ଟିଷ୍ଟ' ସୌଖୀନ ନାଟ୍ୟ ସଂସ୍ଥାଦ୍ୱାରା ଅଭିନୀତ ହେଲା । ଦର୍ଶକ ମନରେ ବୌଦ୍ଧିକ ଅନୁଭୂତି ଓ ନୂତନ ଆନନ୍ଦବୋଧ ଜାଗ୍ରତ କରିବାପାଇଁ ସୌଖୀନ ନାଟ୍ୟ ସଂସ୍ଥା 'ସୃଜନୀ' ୧୯୬୪ ରେ ଆତ୍ମପ୍ରକାଶ କଲା । ମନୋରଞ୍ଜନଙ୍କ 'ସାଗର ମନ୍ଥନ' ଠାରୁ ଏହାର ଆରମ୍ଭ । ବିଶ୍ୱଜିତ୍ ଦାସଙ୍କ 'ପ୍ରତାପଗଡରେ ଦୁଇଦିନ' ମନୋରଞ୍ଜନଙ୍କ ବନହଂସୀ, ଅମୃତସ୍ୟ ପୁତ୍ର ଆଦି ମୌଳିକ ପରୀକ୍ଷାମୂଳକ ନାଟକ ଏଥିରେ ଅଭିନୀତ ହୋଇଥିଲା । ଅନନ୍ତ ମହାପାତ୍ରଙ୍କ ନିର୍ଦ୍ଦେଶନାରେ ୧୯୭୧ ପର୍ଯ୍ୟନ୍ତ ସୃଜନୀ ସକ୍ରିୟ ଥିଲା । ଭୁବନେଶ୍ୱରର ସୌଖୀନ ନାଟ୍ୟ ସଂସ୍ଥା 'ସଙ୍କେତ୍' ରେ ବିଶ୍ୱଜିତ୍ ଦାସଙ୍କ ମୃଗୟା, ସମ୍ରାଟ ପରି ପରୀକ୍ଷାଧର୍ମୀ ନାଟକର ଅଭିନୟ, ରାଉରକେଲା 'କଳିଙ୍ଗ କଳାପରିଷଦ'ରେ ପରିବେଷିତ 'ତୃତୀୟ ପୃଥିବୀ' 'ହେ ନିଷାଦ ନିବୃତ ହୁଅ', ଧୃତରାଷ୍ଟ୍ରର ଆକ୍ଷି' ଆଦି ଏ ଦିଗରେ ଏକ ଏକ ବଳିଷ୍ଠ ପଦକ୍ଷେପ । ଭୁବନେଶ୍ୱରର 'ଏବଂ ଆମ୍ଭେ' 'ସବୁଜ ନାଟ୍ୟ ସଂସ୍ଥା', କଟକର 'ସ୍ମୃତି' ଢେଙ୍କାନାଳର 'ଶିଳ୍ପୀ', 'ଶତରୂପା', ସମ୍ବଲପୁରର ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ', ସର୍ବୋପରି 'ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ' ତରଫରୁ ପ୍ରତ୍ୟେକ ବର୍ଷ ନୂତନ ଧରଣର ନାଟକ ମଞ୍ଚସ୍ଥ କରାଯାଇ ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟରେ ବୈପ୍ଳବିକ ପରିବର୍ତ୍ତନ ଆଣିଛି । ଏହି ସବୁ ମଞ୍ଚର ଶିକ୍ଷିତ ସୌଖୀନ କଳାକାରମାନେ ସଂପ୍ରତି ଖ୍ୟାତି ଅର୍ଜ୍ଜନ କରିଥିବା ମନୋରଞ୍ଜନ ଦାସ, କାର୍ତ୍ତିକ ରଥ, ବିଜୟ ମିଶ୍ର, ବିଶ୍ୱଜିତ୍ ଦାସ, ରମେଶ ପାଣିଗ୍ରାହୀ, ପ୍ରଫୁଲ୍ଲ ରଥ, ରତ୍ନାକର ଚଇନି ଏବଂ ନୂତନ ନାଟ୍ୟକାରମାନଙ୍କ ବହୁ ବୌଦ୍ଧିକ ଶ୍ରେଣୀର ନାଟକ ମଞ୍ଚସ୍ଥ କରି ନବ-ନାଟ୍ୟ ଆନ୍ଦୋଳନକୁ ଓଡ଼ିଶାରେ ସର୍ବତ୍ର ପରିବ୍ୟାପ୍ତ କରାଇଛନ୍ତି ।

ଆଜି ସତ୍ୟ, ନ୍ୟାୟ ଆଦର୍ଶ ଭିତ୍ତିକ ପାରଂପରିକ ସମାଜର, ମୂଲ୍ୟବୋଧ ବଦଳିଯାଇଛି । ଯାନ୍ତ୍ରିକତା ଏବଂ ବ୍ୟକ୍ତି କେନ୍ଦ୍ରିକ ଚିନ୍ତାଧାରା ସାଂପ୍ରତିକ ମଣିଷକୁ କବଳିତ କରିଛି । ଦୁଃଖ, ନୈରାଶ୍ୟ, ଅସହାୟତା ଏବଂ ବିଚ୍ଛିନ୍ନତା ବୋଧ ମଣିଷକୁ ପ୍ରତ୍ୟେକ ମୁହୂର୍ତ୍ତରେ ମରଣାନ୍ତକ ଯନ୍ତ୍ରଣା ଦେଉଛି । ଏସବୁର ବାସ୍ତବ ପ୍ରକାଶ ଏବଂ ଆଧୁନିକ ମଣିଷର ସୂକ୍ଷ୍ମ ଆନ୍ତଃଚେତନାକୁ ଉଦ୍‌ଘାଟନ

କରିବାପାଇଁ ପାରଂପରିକ ନାଟକ ସମର୍ଥ ନୁହେଁ । ବ୍ୟକ୍ତି ସ୍ୱାତନ୍ତ୍ୟ ଯୁଗରେ ମଣିଷର ଚିନ୍ତା-ଚେତନା, ବକ୍ତବ୍ୟ, ଆଚରଣ ବିଧି ଏବଂ ସମସ୍ୟା ଉଦ୍ଭଟ ଶୈଳୀ ମଧ୍ୟଦେଇ ଆଧୁନିକ ମାନବର ସୂକ୍ଷ୍ମ ମାନସିକ ଅଧ୍ୟୟନ ଅପରିହାର୍ଯ୍ୟ । ହେତୁ ଆଜିର ନାଟକରେ ବିଚ୍ଛିନ୍ନ ଅସଂଲଗ୍ନ ସଂଳାପ ପ୍ରୟୋଗ, ଖଣ୍ଡିତ କଥାବସ୍ତୁ ଏବଂ ଚାଣି ମଧ୍ୟ ଅଜଣା ପରି ବୋଧ ହେଉଥିବା ଚରିତ୍ର ଗ୍ରହଣ ତଥା ଚରିତ୍ରର ଅବଚେତନ ମନର ଦ୍ୱାର ଉଦ୍‌ଘାଟନ ପାଇଁ ସାଙ୍କେତିକ ଦୃଶ୍ୟ ସଜ୍ଜା, ଶବ୍ଦ, ଆଲୋକ ପ୍ରୟୋଗ ଦ୍ୱାରା ବିଭିନ୍ନ ପରୀକ୍ଷା ନିରୀକ୍ଷା ଚାଲୁ ରହିଛି । ସାଂପ୍ରତିକ ନାଟକର ସମସ୍ତ ଦିଗ ପାରଂପରିକ ନାଟକ ଠାରୁ ପୃଥକ୍ ଥିବାରୁ ସାଧାରଣ ଦର୍ଶକ ତାହାକୁ ସହଜରେ ଗ୍ରହଣ କରିପାରୁ ନାହିଁ । ପରୀକ୍ଷା-ମୂଳକ ଶୈଳୀ, ଆନନ୍ଦବୋଧର ଅଭାବ, ବୌଦ୍ଧିକ ଚେତନାର ପ୍ରାଚୁର୍ଯ୍ୟ, ସର୍ବୋପରି ପରିବେଶ ସହିତ ତଥ୍ୟର ମେଳ ନଥିବା ହେତୁ ଓଡ଼ିଆ ଦର୍ଶକମାନଙ୍କ ହୃଦୟକୁ ଏହି ଉଦ୍ଭଟ ଶୈଳୀର ନାଟକ ଓ ପ୍ରତୀକ ମଞ୍ଚ ସ୍ପର୍ଶକରି ପାରୁନାହିଁ । 'ଆଗାମୀ'ରେ ଆଧୁନିକ ଶ୍ୱାସରୁଦ୍ଧ ଅବସ୍ଥାର ପ୍ରତୀକ 'ଧୂଆଁ' 'ଅରଣ୍ୟଫସଲ'ର ଅତୃପ୍ତ ଯୌନ କାମନାର ପ୍ରତୀକ 'ଛେଳି' 'ବନହଂସୀ'ରେ ମଣିଷର ମନରାଜ୍ୟରେ ସମସ୍ତ ହୀନତାର ଅଭିବ୍ୟଞ୍ଜକ 'ଅଚଳ ଘଡ଼ି', 'ମୁଗୟାରେ ଅବଚେତନ ମନର ସ୍ୱରୂପ ଉଦ୍‌ଘାଟନ ପାଇଁ ଆଲୋକ ସଂପାତ, ଅତୀତ ଘଟଣା ପ୍ରଦର୍ଶନପାଇଁ 'ଶବବାହକମାନେ'ରେ Stage Freeze ର ପ୍ରଚଳନ ପରି ବହୁପ୍ରତୀକ ଓ ସାଙ୍କେତିକ କୌଶଳ ପ୍ରଦର୍ଶନ ସାଧାରଣ ଦର୍ଶକମାନଙ୍କ ପକ୍ଷରେ ଗ୍ରହଣ କରିବା କଷ୍ଟସାଧ୍ୟ ହୋଇ ପଡୁଛି । ଫଳରେ ଆଧୁନିକ ନାଟକ ଲୋକପ୍ରିୟତା ହରଇ ବସୁଛି । ବିଶ୍ୱ ନାଟ୍ୟ ସାହିତ୍ୟରେ ଆଜି ଦେଖାଦେଇଥିବା ଏହି ସମସ୍ୟାକୁ ଦୂରକରିବାପାଇଁ କେତେକ ଚିନ୍ତା-ଶୀଳ ନାଟ୍ୟକାର ଆଗେଇ ଆସିଛନ୍ତି । ଜର୍ମାନ ନାଟ୍ୟକାର ବ୍ରେଖେଟ ବୌଦ୍ଧିକ ଓ ଲୋକନାଟ୍ୟର ଅଙ୍ଗିକ ସମନ୍ୱୟରେ 'ଏପିକ୍' ନାଟ୍ୟଶୈଳୀର ପ୍ରବର୍ତ୍ତନ କରିଛନ୍ତି । ଏକ ଜଣାଶୁଣା ଆକର୍ଷଣୀୟ କଥାବସ୍ତୁ ମଧ୍ୟଦେଇ ଲୋକଶିକ୍ଷା ଏବଂ ମନୋ-ରଞ୍ଜନର ଏକ ମଧୁର ସମନ୍ୱୟ ସେ ନାଟକରେ ଘଟାଇଛନ୍ତି । ଅନ୍ୟଦିଗରେ ବୌଦ୍ଧିକତା ମଧ୍ୟ ସେଥିରେ ସୁରକ୍ଷିତ ହୋଇଛି ।

ଏହି ନାଟ୍ୟଶୈଳୀ ଉଭୟ ବୁଦ୍ଧିଜୀବୀ ଗୋଷ୍ଠୀ ଏବଂ ସାଧାରଣ ଦର୍ଶକଙ୍କୁ ଆକୃଷ୍ଟ କରିଛି । ନାଟ୍ୟକାର ମନୋରଞ୍ଜନ ଦାସଙ୍କ 'ନନ୍ଦିକାକେଶରୀ' 'କାଠଘୋଡ଼ା', କାର୍ତ୍ତିକ ରଥଙ୍କ 'ବହ୍ନିମାନ' ଆଦି ନାଟକରେ ଏହି ଶୈଳୀ ଗୃହୀତ । 'ନନ୍ଦିକା-କେଶରୀ' ନାଟକରେ ଦର୍ଶକ ଓ ନାଟ୍ୟବସ୍ତୁ ମଧ୍ୟରେ ବ୍ୟବଧାନ ସୃଷ୍ଟିପାଇଁ ଦେଶୀୟ ନାଟକର ସଭ, ସଂସ୍କୃତ ନାଟକର ସୂତ୍ରଧାର, ପାଶ୍ଚାତ୍ୟ କୋରସର ପ୍ରୟୋଗ ରହିଛି । ନାଟ୍ୟ ଚରିତ୍ରର ପରିଚୟ ପ୍ରଦାନ, ତୃତୀୟ ପୁରୁଷର ବ୍ୟବହାର ମଧ୍ୟରେ ନାଟକର ଉଦ୍ଦେଶ୍ୟ କଥନ, ସାଙ୍ଗୀତିକ ସଂଳାପ, ହାସ୍ୟରସର ବୌଦ୍ଧିକ ପ୍ରୟୋଗ ଏବଂ ମୁକ୍ତମଞ୍ଚରେ ଅଭିନୟ କରିବାର ସୁଯୋଗ ସୃଷ୍ଟିକରି ଉଭୟ ଶ୍ରେଣୀର ଦର୍ଶକମାନଙ୍କୁ ପରିତୃପ୍ତ କରିବାକୁ ସେ ଚେଷ୍ଟା କରିଛନ୍ତି । ଆଜିର ବ୍ୟବସାୟିକ ମଞ୍ଚର ଅଭାବ ବେଳେ ସିନେମା ଟି.ଭି.ର ପ୍ରାଦୁର୍ଭାବରୁ ଓଡ଼ିଆ ମଞ୍ଚକଳାକୁ ବଞ୍ଚାଇବାପାଇଁ ଏପରି ନୂତନ ନାଟ୍ୟ ଶୈଳୀର ବିଶେଷ ଆବଶ୍ୟକତା ରହିଛି ବୋଲି ମନେହୁଏ ।

ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ବୁର୍ଲା

●

# ଫୁଟି ଉଠିବାର ବେଳ

କୁମାରୀ ବୀଣାପାଣି ଦେବତା

ନା ପୁଗ ଫୁଲହୋଇ
ଫୁଟି ପାରିନି ଏ ଯାଏ,
ମୁହୂର୍ତ୍ତ ମୁହୂର୍ତ୍ତରେ
ପାଖୁଡ଼ାଏ ପାଖୁଡ଼ାଏ ହୋଇ
ଫୁଟି ଉଠୁଛି ।
ସୂର୍ଯ୍ୟକିରଣ, ଜ୍ୟୋସ୍ନା, ଶିଶିରକୁ ଡାକିଛି,
ପବନକୁ ଖେଳିବାକୁ ଦେଇଛି
ଶିରପ୍ରଶିରରେ
ଭ୍ରମରକୁ ଓଠ, ଆଖି, ହୃତ୍‌ପିଣ୍ଡକୁ
ଗୀତରେ ଯୋଡ଼ିବାକୁ ଦେଇଛି,
ମୁଁ ଦାୟୀ ନୁହେଁ
ଏ କଣ୍ଟା, ଧୂଳି, ଦୁର୍ଗନ୍ଧ ପାଇଁ
ମୁଁ ଫୁଟି ଉଠିଲେ ଏମାନେ
ଅପସରି ଯିବେ ଜାଣିଛି, ନୀରବ ରହିଛି
କେମିତି ଜାଣିବି;
ମତେ କେମିତି ଆଙ୍କୁଛି କିଏ
ଶିଶୁର ଆବୁରୁ ଜାବୁରୁ ରେଖା,
କିଶୋରୀର ଦର୍ପଣ;
ମଧୁ ଶଯ୍ୟାର ବଧୂ,
କଳା ବାକ୍‌ସ ଭିତରେ ବୃଦ୍ଧଜନ,
ମୁଁ ତ ଋଳ ଉପରର ଧୂଆଁ,
ଆଗକୁ ଲମ୍ବିଥିବା ରାସ୍ତାକୁ
ସମାନ ଭବେ ସ୍ୱୀକାର କରିଛି ।
ଛାତିର ଗଭୀରତାରୁ
ମୁକୁଳି ଆସୁଥିବା ଅଥଚ
ପୁଗ ଶୁଭୁନଥିବା ଗୀତଟିଏ ପରି
ମୁଁ ଧୀରେ ଧୀରେ
ଫୁଟି ଉଠୁଛି ।

ଏମ୍. ଫିଲ୍. ଛାତ୍ରୀ
ଉପାଧ୍ୟୁତ୍ତର ଓଡ଼ିଆ ବିଭଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ତେଲିର ତେଲଠେକି ଭାଙ୍ଗିଲା

**ଡଃ ଅଶୋକ କୁମାର ଦାଶ**

କଥାଟି କିଏ କେବେ କହିଥିଲେ ଜଣାନାହିଁ । ମତେ କହିଥିଲେ ବଳଭଦ୍ର ଦାଶ — ମୋର ଅଜା ।

କୌଣସି ଏକ ଗ୍ରାମରେ ଏକ ଗରିବ ତେଲି ଥିଲା । ଗରିବ ହେଲେ କଣ ହେବ ବିରାଗ ସ୍ୱପ୍ନ ଦେଖିବାରେ ଖୁବ୍ ଓସ୍ତାଦ ଥିଲା । ସେଥିପାଇଁ ତ ଆଉ ପଇସା ପଡୁନାହିଁ । ଦିନବେଳେ ବାଟ ଚାଲୁ-ଚାଲୁ ବି ସେ ସ୍ୱପ୍ନ ଦେଖେ । ଆଉ ମସ୍‌ଗୁଲ ହୋଇଯାଏ । ଝୁଣ୍ଟି ପଡ଼ିଲେ କି ପଛପଟୁ ଟାପରା କରୁଥିବା ପିଲାମାନଙ୍କ କେଁଆ ପାଇଲେ ଯାଇ ତାର ସ୍ୱପ୍ନଭଙ୍ଗେ ।

ତେଲି ଦିନେ ଘଣାରୁ ତେଲପେଡ଼ ବାହାର କଲା । ଠେକି ଗୋଟାକରେ ସାଇତି ରଖିଲା । ଭାର ଗୋଟାଏ କରି ଶିକାରେ ଗୋଟିଏ ପଟେ ଠେକିଟାକୁ ଅନ୍ୟପଟେ ପଥର ଗୋଟେ ଦେଇ କାନ୍ଧରେ ତାକୁ ବୋହି ଚାଲିଥାଏ । ମନେ ମନେ ଭାବୁଥାଏ ଆଜି ତେଲତକ ବିକି ଦେଲେ ଯେ ପଇସାକୁ ସବୁଦିନ ଭଳି ଡାଲି ଚାଉଳ କିଣି ବଦଖର୍ଚ୍ଚ କରିବ ନାହିଁ । ସେ ପଇସାରେ ଗୋଟାଏ ଅଣ୍ଡା ବି କିଣିବ । ଅଣ୍ଡାଟିରୁ କିଛି ଦିନପରେ ଛୁଆ ଫୁଟିବ । ତାପରେ ଛୁଆଟି ବଡ ହୋଇଗଲେ ପୁଣି ସେ ଅଣ୍ଡା ଦେବ । ଅଣ୍ଡା ଗୁଡ଼ିକରୁ ଅନେକ ଛୁଆ ବାହାରିବେ । ତାପରେ ସମସ୍ତେ ବଡ ହେବେ । ପୁଣି ସେମାନେ ଅଣ୍ଡାଦେଇ ଛୁଆ କରିବେ । ଇୟେ କର୍ମବର୍ଦ୍ଧିଷ୍ଣୁ ଯୋଜନା କିଛିଦିନ ଚାଲିଲା ପରେ ସେ ସମସ୍ତ କୁକୁଡାଙ୍କୁ ବିକି ଗୋଟାଏ ମାଈ ଛେଳି କିଣିବ । ଛେଳିର ବି ଅସ୍ତେ ବିହନ ବଢ଼ିବ । କୁକୁଡା ଭଳି ଛେଳି ପରେ ଛେଳି ଛୁଆ । ଛେଳିଛୁଆ ପରେ ପୁଣି ଛେଳି ।' ଏମିତି ଶହେ ଶଣ୍ଢେ ଛେଳି ହେଲେ ତାଙ୍କୁ ବିକି ରଜାଙ୍କ ଭଳି ଗୋଟେ ଲଗାମ ଲଗା ଘୋଡା କିଣିବ । ଖାଲି ରଜା କ'ଣ ଘୋଡାଚଢି ଜାଣନ୍ତି ? ଏମିତି ଭାବୁ ଭାବୁ ସେ ଗୋଟିଏ ପଥୁରିଆ ରାସ୍ତାରେ ଲାଗିଲାଣି । ତାକୁ ସେକଥା ଅଜଣା । ମନେ ମନେ ରଜା ବି ହୋଇ ଗଲାଣି । ଆଗପଟେ ତେଲଠେକି ଝୁଲୁଥିବା ଶିକାକୁ ଧରି ସେ ଘୋଡାର ଲଗାମ ମନେ କଲାଣି ମନେକଲା ଘୋଡାପିଠିରେ ବସି ସେ କେମିତି ଯିବ ? ଏଇ ରାସ୍ତାରେ ଘୋଡା ଛୁଟାଇ ଦେବଯେ ସିଧା ଯାଇ ସିଂହଦ୍ୱାର ପାଖରେ ହାଜର । ରଜା ଝିଅ ତେଣେ ଝରକା ଫାଙ୍କରୁ ତେଲିକୁ ଦେଖିବ ଆଉ କହିବ 'ହିୟ ସଖି । ସେ କୋଉ ଦେଶର ରାଜପୁତ୍ର ହେବେ ? ଆମ୍ଭେ ମନ-ପ୍ରାଣ ସମର୍ପି ଦେଲୁଣି ।' ତାପରେ ମୂଷାମାଟି କଣ୍ କଣ୍ ବିଲେଇ ଗୁହ ସଣ୍ ସଣ୍ ଘରେ ମୁହଁମାଡ ଶୋଇବ । ଶୋଉ । ମୋର କଣ ଯାଏ ? ଏଇ କଥା ଭାବିଲା ବେଳକୁ ତେଲି ଘୋଡା ପିଠିରେ ବସି ସାରିଥାଏ ଆଉ ଠେକିଝୁଲା ଶିକାକୁ ଲଗାମ କରି ଗୋଡ ଦିଟାକୁ ଘୋଡା ଭଙ୍ଗିରେ ଟେକି ଡେଇଁବା ଆରମ୍ଭ କରି ଦେଇଥାଏ । ଅଭ୍ୟାସ ନକଲେ ଘୋଡା ଚଢା କ'ଣ ଏତେ ସହଜ ? ତାପରେ ଚାଲିଲା ଘୋଡା ଖଡ୍‌ବଡ୍ ଖଡ୍‌ବଡ୍ ତେଲି ଘୋଡା ଭଳି ଦୌଡୁଛି ଆଉ ଶିକାକୁ ମୁଠେଇ ଧରିଛି । ଏଥର ଘୋଡା ଆହୁରି ଜୋରରେ ଡେଇଁଲା ଆଉ ଝୁଣ୍ଟି ପଡ଼ିଲା ଏକ ଖାଲରେ । ଏଣେ କାନ୍ଧରେ ତେଲ ଠେକି ଭାର । ଠେକିଟା ପଥରରେ ଛେଚି ହୋଇ ଚୋ । ଲହୁଲୁହାଣ ହୋଇ ତେଲି ଉଠିଲା ବେଳକୁ ସଂବିତ୍ ଫେରିପାଇଲା । ଘୋଡା କୁଆଡେ ଗଲା ବୋଲି ଦେଖିଲା ବେଳକୁ ଭଙ୍ଗା ତେଲ

